# ଦେଶର ଆହ୍ୱାନ

ଲେଖକ ଓ ପ୍ରକାଶକ

ଶ୍ରୀ ଗୋବନ୍ଦଚନ୍ଦ୍ର ମିଶ୍ର

କାଳଗଳି, କଟକ

ପ୍ରଥମ ମୁଦ୍ରଣ

୧୯୬୦

ମୂଲ୍ୟ ଟ ୨.୦୦

# ଭୂମିକା

ଭୂମିକାରେ ପୁସ୍ତକର ପରିଚୟ ଦେବାର କଥା । ଦେଶର ଜନସାଧାରଣ ଦେଶକୁ ଆପଣାର ବିଚାରି ନିଜ ନିଜର କର୍ତ୍ତବ୍ୟ ଚିନ୍ତା କରିବାରେ ସାହାଯ୍ୟ କରିବା ବିଷୟ ଏହି ପୁସ୍ତକରେ ଉଲ୍ଲେଖ କରାଯାଇଛି । ଭାରତ ସ୍ୱାଧୀନତା ଲାଭ କରିଛି ସତ୍ୟ, କିନ୍ତୁ ସ୍ୱାଧୀନ ଦେଶରେ ବାସକରୁଥିବା ନରନାରୀ ଯେପରି କାର୍ଯ୍ୟ ଅବା ଚିନ୍ତା କରନ୍ତି ସେପରି କର୍ମ ଓ ଚିନ୍ତା କରିବାର କୌଣସି ସଂକେତ ଭାରତର ଜନସାଧାରଣଙ୍କଠାରେ ଦେଖିବାକୁ ମିଳୁନାହିଁ । ଦେଶବାସୀଙ୍କର କାର୍ଯ୍ୟ ଓ ଚିନ୍ତା ଦେଶର ଭାଗ୍ୟ ଗଠନ କରେ— ଏହି ସାଧାରଣଜ୍ଞାନ ଆମ ଦେଶବାସୀଙ୍କ ହୃଦୟରେ ସ୍ଥାନ ପାଇ ନାହିଁ । ପ୍ରତ୍ୟେକ ବ୍ୟକ୍ତି ନିଜ ଖିଆଲରେ ଅନ୍ଧ ପାଲଟିଛି । କିଏ କଣ କରୁଛି ତାର କୌଣସି ଠିକଣା ନାହିଁ । ବିଭିନ୍ନ ରାଜନୈତିକ ଦଳ ନିଜ ନିଜର ଦଳଗତ ରାଜମତ ପ୍ରଚାର କରି ଜନସାଧାରଣଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରୁଛନ୍ତି । ଭାରତର ଭାଗ୍ୟ ଗଠନ କରିବାକୁ ଅର୍ଥାତ୍ ବର୍ତ୍ତମାନ ଅବସ୍ଥାରେ ଉନ୍ନତି ଘଟାଇବାକୁ ଯେଉଁ କର୍ମ-ଯୋଜନା ବନ୍ଧା ଯାଇଛି ତାହା ବୁଝି ବିଚାରି କାର୍ଯ୍ୟ କରିବାକୁ ଦେଶରେ କାହାର ଆଗ୍ରହ ଜାତ ହେଉନାହିଁ । ଏହା ଅତିଶୟ ଚିନ୍ତାର ବିଷୟ ।

ବହୁବର୍ଷ ବିଦେଶୀ ଶାସନର ଅଧୀନରେ ରହିବା କାରଣରୁ ଆମ ଦେଶର ମୂଳପିଣ୍ଡ ଦୁର୍ବଳ ହୋଇ ପଡ଼ିଛି । ଏହି ମୂଳପିଣ୍ଡକୁ ଟାଣ କରି ଗଢ଼ିବା ହେଲା ପ୍ରଥମ କାର୍ଯ୍ୟ । ଦେଶର ମୂଳପିଣ୍ଡ ହେଲା ଲୋକଚରିତ୍ର । ମନୁଷ୍ୟର ମନ ଓ ହୃଦୟରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୁଏ ତାହାହିଁ ଚରିତ୍ର ଗଠନର ଏକମାତ୍ର ଉପାଦାନ । ଭାରତବାସୀଙ୍କର ମନ ଓ ହୃଦୟରେ ଯେଉଁ ପ୍ରତିକ୍ରିୟା ଚାଲୁ

ପ୍ରତିଘାତ କରିବ, ତାହାହିଁ ସେମାନଙ୍କ କର୍ମ ଓ ଚିନ୍ତାକୁ ପ୍ରଭାବିତ କରିବ । ଦେଶବାସୀଙ୍କର କର୍ମ ଓ ଚିନ୍ତା କେବଳ ଦେଶର ମୂଳପିଣ୍ଡକୁ ଗଠନ କରିବାରେ ଏକମାତ୍ର ଉପାଦାନ ।

ଭାରତର ମୂଳପିଣ୍ଡକୁ ତ୍ରାଣ କରିବାକୁ ଯେଉଁ କର୍ମଯୋଜନା କାର୍ଯ୍ୟକାରୀ କରାଯାଉଛି ସେଥିରେ ଦେଶବାସୀଙ୍କର ସାହାଯ୍ୟ ଓ ସହଯୋଗ ଦରକାର । କିନ୍ତୁ ଏହି କର୍ମଯୋଜନାକୁ ଦେଶବାସୀ ନିଜର ବୋଲି ଆଦରି ପାରୁ ନ ଥିବା କାରଣରୁ ଆଶାନୁରୂପ କାର୍ଯ୍ୟ ହୋଇପାରୁନାହିଁ । ଭାରତ ଗୋଟିଏ କର୍ମପନ୍ଥା ବାଛି ନେଇ ସେହି ବାଟରେ ବହୁଦୂର ଆଗେଇ ଗଲାଣି । ବାଟରେ ଯାଉଁଯାଉଁ ଯେଉଁ ଦୋଷ ତ୍ରୁଟି ଦେଖା ଯାଉଛି ତାହାକୁ ଦୂର କରିବା ପାଇଁ ବିଭିନ୍ନ ଉପାୟ ଅବଲମ୍ବନ କରାଯାଇଛି । ଏପରି ଅବସ୍ଥାରେ ଜନସାଧାରଣଙ୍କର କର୍ତ୍ତବ୍ୟ କ'ଣ ତାହା ସମସ୍ତଙ୍କର ଚିନ୍ତା କରିବାର କଥା ; ଏହାହିଁ ଦେଶର ଆହ୍ୱାନ ।

ଶାସନ କ୍ଷେତ୍ରରେ ବିଶୃଙ୍ଖଳା ଚରମ ସୀମାରେ ପହଞ୍ଚିଲାଣି । ଗ୍ରାମବାସୀଙ୍କ ବିଚାର ବୁଦ୍ଧିରେ ବିଭ୍ରାଟ ଘଟିଛି । ଦେଶର ମୁଖ୍ୟ ପ୍ରଶ୍ନ କଣ, ତାହା ସେମାନେ ବୁଝି ପାରୁନାହାନ୍ତି । ବିଭିନ୍ନ ରାଜନୈତିକ ଦଳ ଯେପରି କଥା କହୁଛନ୍ତି, ତଦ୍ୱାରା ସାଧାରଣ ଗ୍ରାମବାସୀ କାହାରିକୁ ବିଶ୍ୱାସ କରି ପାରୁନାହାନ୍ତି । ପରସ୍ପରରେ ଅବିଶ୍ୱାସ ଅଧିକ ମାତ୍ରାରେ ବୃଦ୍ଧି ପାଇଛି । ରାଜନୈତିକ ଦଳ, ସମସ୍ତ ପ୍ରକାର ଦୁର୍ନୀତିର ମୂଳ କାରଣ ବୋଲି ସରକାରୀ କର୍ମଚାରୀ ଓ ଜନସାଧାରଣଙ୍କ ମନରେ ଏକ ଭ୍ରାନ୍ତ ଧାରଣା କ୍ରମଶଃ ବୃଦ୍ଧି ପାଉଛି । ଏପରି ପରିସ୍ଥିତିରେ ଦେଶର ମୂଳପିଣ୍ଡକୁ ତ୍ରାଣ କରି ଗଢ଼ିବା ପ୍ରଶ୍ନ କାହାରି ମନକୁ ସ୍ପର୍ଶ କରି ପାରୁନାହିଁ । ଦେଶର ବର୍ତ୍ତମାନ ଅବସ୍ଥା ଅତି ସଙ୍କଟପୂର୍ଣ୍ଣ । ଏହି ସଂକଟପୂର୍ଣ୍ଣ ପରିସ୍ଥିତିକୁ ଅତିକ୍ରମ କରିବା

ପାଇଁ ସେଉଁ ବାଟ ବନ୍ଧାଯାଇଛି ସେହି ବାଟରେ ଗତି କରିବାକୁ ଆଖି ଖୋଲି ଦେବାରେ ସାହାଯ୍ୟ କରିବ 'ଦେଶର ଆହ୍ୱାନ' । ଅନ୍ୟକୁ ଅପେକ୍ଷା ନ କରି ନିଜର ଚିନ୍ତା ଓ କର୍ମ ଦ୍ୱାରା ନିଜର ନିଜର ଏବଂ ନିଜ ଗ୍ରାମ ଓ ଦେଶର ମୂଳପିଣ୍ଡକୁ ଠାଣ କରି ଗଢ଼ିବାକୁ ହେବ 'ଦେଶର ଆହ୍ୱାନ' ତାହାହିଁ ନିର୍ଦ୍ଦେଶ ଦେବ ।

ଗୀତା ମଧ୍ୟ କହୁଛି—

"ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍ ।
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ॥

ଅର୍ଥାତ୍ ମନୁଷ୍ୟ ନିଜର ଉଦ୍ଧାର ନିଜେ କରିବ । ମନୁଷ୍ୟ ନିଜେ ନିଜର ଶତ୍ରୁ ଓ ନିଜେ ନିଜର ମିତ୍ର । ସେ ଯେପରି ଚିନ୍ତା କରିବ ସେପରି କାର୍ଯ୍ୟ କରିବ । ମନୁଷ୍ୟର ଚିନ୍ତା ଓ କର୍ମ ତାର ସୁଖ ଦୁଃଖର ମୂଳ କାରଣ । ଅପରର ଦୋଷ ତ୍ରୁଟି ସମାଲୋଚନା କରି ନିଜର ମଙ୍ଗଳ ସାଧନ କରି ହୁଏନାହିଁ । ସୁତରାଂ ନିଜର କର୍ତ୍ତବ୍ୟ କର୍ମ ଉପରେ କଲେ ଦେଶର ମୂଳପିଣ୍ଡ ଠାଣ ହେବ, ତାହାର ସୂଚନା 'ଦେଶର ଆହ୍ୱାନ'ରେ ମିଳିପାରିବ । ଏହି ପୁସ୍ତକରେ ବହୁ ବିଷୟରେ ଅବତାରଣା କରାଯାଇଛି । କୌଣସି ନିର୍ଦ୍ଦିଷ୍ଟ ମତବାଦ ଅବା ଘଟଣାବିଶେଷର ଇତିବୃତ୍ତ ଲେଖିବା ପୁସ୍ତକର ଉଦ୍ଦେଶ୍ୟ ନ ଥିବାରୁ ତାହାର ସବିଶେଷ ଆଲୋଚନା କରାଯାଇ ନାହିଁ । ପ୍ରତ୍ୟେକ ଘଟଣା ଏବଂ ମତବାଦର ଦିଗ୍‌ଦର୍ଶନ ମାତ୍ର କରାଯାଇଛି । ଇତିହାସ ଲେଖାଯାଇନାହିଁ । ସାଧାରଣ ସରଳ ପଲ୍ଲୀବାସୀର ମନରେ ଘଟଣା ଚକ୍ରରେ ପରିସ୍ଥିତି କିପରି ବଦଳି ଯାଏ ତାହାର ଗୋଟିଏ ଧାରଣା ଜନ୍ମାଇବା ପାଇଁ ଯାହା ଆବଶ୍ୟକ ବୋଧ ହୋଇଛି, ତାହାର ଆଭାସ ମାତ୍ର ଦିଆଯାଇଛି । ଏଥିରେ ମତବାଦ କିମ୍ବା ଇତିହାସର ଗୁରୁତ୍ୱ ଅର୍ପଣ କରିବା ଠିକ୍ ହେବ ନାହିଁ ।

ସ୍ୱାଧୀନତା ଲାଭ ପରେ ଭାରତକୁ ସମୃଦ୍ଧିଶାଳୀ କରି ଗଢ଼ିବାକୁ ବହୁମୁଖୀ କର୍ମପ୍ରବାହ ସୃଷ୍ଟି କରିସାରି ଅଜସ୍ର ଧନବ୍ୟୟ ହେଲାଣି ଏବଂ ପୁଣି ଅଧିକ ବ୍ୟୟ ହେବ । ଏହାର ଗତିରୋଧ କରିବା ବର୍ତ୍ତମାନ ପରିସ୍ଥିତିରେ ଦେଶବାସୀଙ୍କ କର୍ତ୍ତବ୍ୟ ବୋଲି କେହି କହି ପାରିବେ ନାହିଁ । ସ୍ରୋତ ତାର ଗତି କରିବ । ଅନ୍ୟ-ମନସ୍କ ଦର୍ଶକ ଭାବେ ଠିଆ ହୋଇ ଦୋଷ ବାଛିବା ସୁସ୍ଥ ମନୁଷ୍ୟର ମନୋବୃତ୍ତିର ପରିଚୟ ଦେବନାହିଁ । ସୁତରାଂ ସମୟ ଓ ଶକ୍ତିର ଅପଚୟ ନ କରି ଅନୁସୃତ କର୍ମ ମାର୍ଗକୁ ସରଳ ଓ ସହଜ କରିବାକୁ ଦେଶବାସୀ ମନପ୍ରାଣ ଅର୍ପଣ କରି କପରି କାର୍ଯ୍ୟ କରିବେ, 'ଦେଶର ଆହ୍ୱାନ' ତାହା ହିଁ ସୂଚନା ଦେବ ।

ଦେଶର କର୍ମମୟ ଜୀବନର ଗୋଟିଏ ଚିତ୍ର ମୁଁ ଅଙ୍କନ କରିଛି । ଦେଶକୁ ଯେ ଯେପରି ରୂପରେ ଦେଖୁଛି ସେ ତଦନୁରୂପ କହିବ ଏବଂ ତଦନୁସାରେ ମଧ୍ୟ କାର୍ଯ୍ୟ କରିବ । 'ଦେଶର ଆହ୍ୱାନ' ପୁସ୍ତକରେ ମୁଁ ମୋର ଦେଶାତ୍ମବୋଧ ଜ୍ଞାନକୁ ଭାଷାରେ ବ୍ୟକ୍ତ କରିଛି । ଏହାକୁ 'ଜାତୀୟ ଜୀବନର ଆତ୍ମପ୍ରକାଶ' ପୁସ୍ତକର ଚତୁର୍ଥଖଣ୍ଡ କହିବାକୁ ମୋର ମନ କହୁଛି । ଏ ଖଣ୍ଡି ଆଦୃତ ହେବାର ଦେଖିଲେ 'ଦେଶର ଆହ୍ୱାନ' ଦେଶବାସୀଙ୍କ କାନରେ ବାଜିଲା ବୋଲି ଭାବି ୫ମ ଖଣ୍ଡ ଲେଖିବାକୁ ମନ ବଳେଇବ । ଇତି ।

ଜୟହିନ୍ଦ୍

**ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର**

# ଦେଶର ଆହ୍ୱାନ

## ଭାରତର ଶାସନନୀତି

ମାନବ ସମାଜର ଉନ୍ନତି ଓ ଅବନତିର ମୂଳକାରଣ ଶାସନନୀତି । କାରଣ ଶାସନର ଏକମାତ୍ର ଉଦ୍ଦେଶ୍ୟ ଦେଶର ଉନ୍ନତି ସାଧନ କରିବା । ସେଥିପାଇଁ କଥାରେ ଅଛି ଯଥା ରାଜା ତଥା ପ୍ରଜା । ଅର୍ଥାତ୍ ରାଜା ହେଉଛନ୍ତି ପ୍ରଜାଙ୍କର ପାଳନ ଅବା ପୋଷଣ କର୍ତ୍ତା । ରାଜାଙ୍କ ବିଚାର ବୁଦ୍ଧି ଉପରେ ପ୍ରଜାଙ୍କର ସୁଖ ଦୁଃଖ ନିର୍ଭର କରେ । ପୂର୍ବକାଳରେ ପ୍ରଜା ରାଜାଙ୍କୁ ନାରାୟଣ ରୂପରେ ଦେଖୁଥିଲେ । ତେଣୁ ରାଜାଙ୍କ କାର୍ଯ୍ୟକଳାପକୁ ବିଚାର କରିବା ପ୍ରଜାର କର୍ତ୍ତବ୍ୟ ନୁହେଁ ବୋଲି ଲୋକେ ବିଶ୍ୱାସ କରୁଥିଲେ । ପ୍ରଜାଙ୍କ ଦୃଷ୍ଟିରେ ରାଜା ଥିଲେ ମହାନ୍ତ ଦେବତା । କିନ୍ତୁ କାଳର ପରିବର୍ତ୍ତନ ସହିତ ପ୍ରଜାଙ୍କ ସୁଖ ଦୁଃଖ ସମାଧାନ କରିବାର ନୂତନ ଉପାଦାନ ସୃଷ୍ଟିହେଲା । ଦେଶରେ ବିଜ୍ଞାନ ବଳରେ ଭୌତିକ ଶକ୍ତି ବିକାଶ ପାଇଲା । ଜଣେ ବ୍ୟକ୍ତି ଯେତେ ଉଚ୍ଚାସନରେ ଅଧିଷ୍ଠିତ ହେଲେ ମଧ୍ୟ କୋଟି କୋଟି ନରନାରୀ ଓ ସେମାନଙ୍କ ସୁଖ ଦୁଃଖର ସମସ୍ୟା ସମାଧାନ କରିବାକୁ ଜଣକ ଉପରେ ନିର୍ଭର କରି ଚଳିବା ଆବଶ୍ୟକ ବୋଧ କରାଗଲା ନାହିଁ । ଭୌତିକ ଜଗତରୁ ଶକ୍ତି ଆହରଣ କରି ଜୀବନ ଯାତ୍ରାକୁ ସହଜ ଓ ସରଳ କରିବାକୁ ଶକ୍ତି ଲୋଡ଼ା । ରାଜା-ଶକ୍ତି ଦେଶକୁ ନିୟନ୍ତ୍ରଣ କରିବ । ସୁତରାଂ ତାହା

ବ୍ୟକ୍ତି ବିଶେଷଙ୍କଠାରେ ରହିବା ଉଚିତ ନୁହେଁ । ଏହିପରି ଚିନ୍ତାରୁ ରାଜା ପ୍ରଜାଙ୍କ ମଧ୍ୟରେ ସଂଘର୍ଷ ଘଟି ପୃଥିବୀରୁ ରାଜପଦ ଲୋପ ପାଇଛି । ଯେଉଁ ଦେଶରେ ରାଜପଦ ଅଛି, ତାହାଙ୍କ ଠାରେ କ୍ଷମତା ନାହିଁ । ସେ କେବଳ ଦେଶ ଓ ଜାତିର ଏକତା ଓ ଗୌରବର ନିଦର୍ଶନ ସ୍ୱରୂପ ପୂଜା ପାଉଛନ୍ତି । ତାଙ୍କ ନାମରେ ଦେଶରେ ସବୁକାମ ଚାଲିଛି । କିନ୍ତୁ କୌଣସି କାର୍ଯ୍ୟରେ ପାଟି ଫିଟାଇ ପଦେ କଥା କହିବାର ଅଧିକାର ତାହାଙ୍କର ନାହିଁ । ସେ ଦେଶର ଓ ଜାତିର ବଡ଼ ଠାକୁର । ସବୁବେଳେ ସବୁକାମରେ ପୂଜା ପାଇବାର ପାତ୍ର । ମାତ୍ର ପୂଜା ସାମଗ୍ରୀ ନିୟନ୍ତ୍ରଣ କରିବାର ଅଧିକାର ତାଙ୍କଠାରେ ନାହିଁ । ସେହି ଅଧିକାର ପ୍ରଜାଙ୍କ ହାତକୁ ଚାଲି ଆସିଛି । ରାଜଶକ୍ତି ପ୍ରଜାଙ୍କ ଅଧିକାରକୁ ଆସିବାରୁ ଏହାର ନାମ ହୋଇଛି ପ୍ରଜାତନ୍ତ୍ର ଶାସନ ।

## ପ୍ରଜାତନ୍ତ୍ରରୁ ସମାଜବାଦର ଉତ୍ପତ୍ତି

ପ୍ରଜାତନ୍ତ୍ର ଶାସନରେ ଦେଶର ଜନସାଧାରଣ ଶାସନକୁ ନିୟନ୍ତ୍ରଣ କରନ୍ତି । ଏଥିରେ ପ୍ରତ୍ୟେକ ପ୍ରଜାର ଅଧିକାର ସମାନ । କେହି କାହାରିଠାରୁ ଆଇନ ଦୃଷ୍ଟିରେ ଉଚ୍ଚ କିମ୍ବା ନୀଚ ବୋଲି ପରିଗଣିତ ହୁଅନ୍ତି ନାହିଁ । କେହି କାହାକୁ କୌଣସି କାର୍ଯ୍ୟରେ ବାଧା ଦେଇ ପାରିବେ ନାହିଁ, ଯଦି ସେହି କାର୍ଯ୍ୟ ସମାଜ ଅବା ଦେଶର ଅନିଷ୍ଟକାରୀ ନୁହେଁ । ପ୍ରତ୍ୟେକ ନିଜର ବୁଦ୍ଧି ବଳରେ କାର୍ଯ୍ୟ କରି, ନିଜର, ପରିବାର ଏବଂ ନିଜ ସମାଜ ତଥା ଦେଶର ଉନ୍ନତି ସାଧନ କରିପାରିବେ, ସେଥିରେ କାହାରିଠାରୁ ବାଧା କେହି ପାଇପାରିବେ ନାହିଁ, ପ୍ରଜାତନ୍ତ୍ର ଶାସନର ମୂଳମନ୍ତ୍ର ହେଲା ଦେଶର ଭଲ ମନ୍ଦ ଚିନ୍ତାକରି କାର୍ଯ୍ୟ କରିବାର ସମାନ ଅଧିକାର ଦେଶର ପ୍ରତ୍ୟେକ ନରନାରୀଙ୍କ ହାତରେ ରହିବ । ଏହି ଅଧିକାର

ପାଇଲେ ନିଜପାଇଁ କାମ କରିବା ଛଡ଼ା ଦେଶପାଇଁ କାମକରିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ କର୍ମ । କାରଣ ପ୍ରଜାତନ୍ତ୍ର ଶାସନରେ ଦେଶର ସ୍ୱାର୍ଥଠାରୁ ବ୍ୟକ୍ତିର ସ୍ୱାର୍ଥ ପୃଥକ୍ ନୁହେଁ । ବ୍ୟକ୍ତି ଓ ଦେଶ ଏକ । ଏହି ପ୍ରକାର ପ୍ରଜାତନ୍ତ୍ର ଶାସନ ପୃଥିବୀର ଅନେକ ଦେଶରେ ବର୍ତ୍ତମାନ ପ୍ରତିଷ୍ଠିତ ହୋଇଛି । ପ୍ରଜାତନ୍ତ୍ର ଶାସନରେ ସମସ୍ତଙ୍କର ସମାନ ଅଧିକାର ଅଛି ସତ୍ୟ, କିନ୍ତୁ ଦେଶରେ ସମସ୍ତଙ୍କର ବୁଦ୍ଧି ଅବା କାର୍ଯ୍ୟ କରିବାର ଶକ୍ତି ସମାନ ନୁହେଁ । ତେଣୁ ଦେଶର ଉତ୍ପାଦନ ଶକ୍ତିକୁ ବ୍ୟବହାର କରି ଧନ ଉପାର୍ଜନ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ହୋଇ ପାରିବ ନାହିଁ । ଏହି କାରଣରୁ ବୁଦ୍ଧିମାନ୍ ବ୍ୟକ୍ତି ଧନ କମେଇ ପାରୁଛି ; ବୁଦ୍ଧିହୀନ ଲୋକ ମଜୁରି କରି ପେଟ ପୋଷୁଛି ।

ବିଜ୍ଞାନବଳରେ ପୃଥିବୀରେ ଯନ୍ତ୍ର ଶିଳ୍ପ ଆବିଷ୍କୃତ ହେଲା । ଧନୀ ଓ ବୁଦ୍ଧିମାନ ଲୋକେ କେବଳ ଏହାର ସୁଯୋଗ ଲାଭ କରିବାକୁ ସକ୍ଷମ ହୋଇପାରିଲେ । ଯନ୍ତ୍ରଶିଳ୍ପ ପ୍ରତିଷ୍ଠିତ ହେବାରୁ ଉତ୍ପାଦନ ଶକ୍ତି ମଧ୍ୟ ବୃଦ୍ଧି ପାଇଲା । ଧନୀକଶ୍ରେଣୀ ଏହାଦ୍ୱାରା ପ୍ରଚୁର ଅର୍ଥ ଉପାର୍ଜନ କଲେ । ଏହି ଧନୀ ବ୍ୟବସାୟୀ ଲୋକେ ଅଧିକ ଧନ ଲାଭ ଆଶାରେ ଗରିବ ମଜୁରିଆଙ୍କୁ କଠୋର ପରିଶ୍ରମ କରିବାକୁ ବାଧ୍ୟ କଲେ । ଧନୀ ଓ ମଜୁରିଆଙ୍କ ଜୀବନ ନିର୍ବାହ ବାଟରେ ଆକାଶ ପାତାଳ ପ୍ରଭେଦ ଦେଖାଗଲା । ମଜୁରିଆ ଓ ଶିଳ୍ପପତିମାନଙ୍କ ମଧ୍ୟରେ ସଂଘର୍ଷ ସୃଷ୍ଟି ହେଲା । ସଂଘର୍ଷ ଘଟିବାରୁ କଳକାରଖାନା ନିୟମିତ ଭାବରେ ଉତ୍ପାଦନ କରି ପାରିଲା ନାହିଁ । କଳକାରଖାନା ବନ୍ଦ ରହି ଜିନିଷ ଉତ୍ପାଦନ ନ ହେଲେ, ଦେଶର ଧନ ଆୟ କମିବ । ପୁଣି ଯାହା ଧନ ଆୟ ହେଲା ତାହା ସବୁ କେତେଜଣ ଶିଳ୍ପପତିଙ୍କ ନିକଟରେ ଠୁଳ ହୋଇ ରହିଲା ।

ଦେଶବାସୀଙ୍କ ଅବସ୍ଥା ପରିବର୍ତ୍ତନ କରିବାକୁ ଦେଶର ସମୂହ ଉନ୍ନତି-
ମୂଳକ କାର୍ଯ୍ୟ କରିବା ଦରକାର । କିନ୍ତୁ ଦେଶର ଆୟ କେତେଜଣ
ମୁଷ୍ଟିମେୟ ବ୍ୟକ୍ତିଙ୍କ ନିକଟରେ ଗଚ୍ଛିତ ହେଲେ ତାହା ସର୍ବସାଧାରଣଙ୍କ
କୌଣସି କାମରେ ସାହାଯ୍ୟ କରି ନ ପାରେ । ଦେଶବାସୀ ପରିଶ୍ରମ
କରିବାରୁ ଯେଉଁ ଧନ ଆୟ ହେଲା ତାହା ସର୍ବସାଧାରଣ କାର୍ଯ୍ୟରେ
ବ୍ୟବହାର ହେବା ଉଚିତ । ତାହା ନ ହେଲେ ଦେଶର ଜନ-
ସାଧାରଣ ସୁଖୀ ହୋଇ ପାରିବେ ନାହିଁ । ଏହିପରି ଅବସ୍ଥା
ଦେଶରେ ସୃଷ୍ଟିହେବାରୁ ସମାଜବାଦ ଜନ୍ମ ଲଭିକଲା । ଇଉରୋପରେ
ଏହିପରି ସମାଜବାଦ socialism ପ୍ରଥମେ ପ୍ରକାଶ ପାଇଲା ।
ସମାଜବାଦରେ ବଡ଼ ବଡ଼ କଲକାରଖାନା ସ୍ଥାପନ କରିବାକୁ
କୌଣସି ବ୍ୟକ୍ତିକୁ ଅନୁମତି ମିଳିଲା ନାହିଁ । ଏହି ପ୍ରଜାତନ୍ତ୍ର ସରକାର
ସବୁ କଲକାରଖାନା ବସାଇଲେ ।

## ସମାଜବାଦରୁ ସାମ୍ୟବାଦର ଉତ୍ପତ୍ତି

ସମାଜବାଦ ମତ ଅନୁସାରେ ଦେଶର ଉତ୍ପାଦନଶକ୍ତି
ସରକାରଙ୍କ ଅଧୀନକୁ ଆସିଲା । ସରକାର ଦେଶର ସବୁକାମ ନିଜେ
କଲେ । ପ୍ରଜା ଭାବିଲେ ସବୁ କାମ ସରକାର କରିବେ । ସାଧାରଣ
ପ୍ରଜାଙ୍କ ହିତ ଉଦ୍ଦେଶ୍ୟରେ ସବୁ କାମ କରିବା ସମାଜବାଦର
ମୂଳମତ । କିନ୍ତୁ ଶ୍ରମ ଓ ଧନ ଉଭୟର ସହଯୋଗରେ ଦେଶର
ସବୁ ଧନ ଆୟ ହେଉଛି । ସମସ୍ତଙ୍କ ହିତ କାର୍ଯ୍ୟରେ ମଧ୍ୟ ତାହା
ବ୍ୟୟ ହେଉଛି । ପ୍ରଜାତନ୍ତ୍ର ଶାସନରେ ସମସ୍ତଙ୍କୁ ସମାନ ଅଧିକାର
ମିଳିଛି । କିନ୍ତୁ ସମାଜରେ ସମସ୍ତେ ସମାନଭାବରେ ଚଳାଚଳ
ହେବାର ସୁବିଧା ସୁଯୋଗ ପାଇ ପାରୁନାହାନ୍ତି । ସୁତରାଂ ଦେଶରେ

ଅସାମଞ୍ଜସ୍ୟ ରହୁଛି । ଶ୍ରମଦ୍ୱାରା ସବୁ କାମ କରାଯାଉଛି । କିନ୍ତୁ ଶ୍ରମିକର ସବୁକାମକୁ ନିୟନ୍ତ୍ରିତ କରିବାର ଅଧିକାର ନାହିଁ । ଶ୍ରମିକ ସବୁ ନିୟନ୍ତ୍ରଣ କରିବାର ଅଧିକାର ପାଇବ ଏବଂ ଦେଶରେ ଜୀବନ ନିର୍ବାହ କରିବାର ସୋପାନ ସମସ୍ତଙ୍କ ପାଇଁ ସମାନ ହେବା ଦରକାର । ଏହିପରି ଚିନ୍ତାରୁ ପୃଥିବୀରେ ସାମ୍ୟବାଦ ଜନ୍ମ ନେଇଥିଲା । ଜର୍ମାନ ଦେଶରେ କାର୍ଲମାର୍କସ ନାମକ ଜଣେ ଖ୍ୟାତନାମା ପୁରୁଷ ଜନ୍ମଗ୍ରହଣ କରିଥିଲେ । ସେହି ମହାତ୍ମା ଏହି ସାମ୍ୟବାଦର ଜନ୍ମଦାତା ।

ରୁଷଦେଶରେ ଏହି ସାମ୍ୟବାଦ ପ୍ରଥମେ ପ୍ରତିଷ୍ଠିତ ହେଲା । ବର୍ତ୍ତମାନ ତାହାକୁ ଚୀନ୍ ପ୍ରଭୃତି ଅନ୍ୟ କେତେକ ଦେଶ ଗ୍ରହଣ କରିଛନ୍ତି । ଏହି ସାମ୍ୟବାଦ ହିଂସା ବଳରେ ପ୍ରତିଷ୍ଠିତ । ଏଥିରେ ବ୍ୟକ୍ତିର କୌଣସି ସ୍ୱାତନ୍ତ୍ର୍ୟ ନାହିଁ । ଦଳର ସବୁ ଅଧିକାର । ଦଳର ଦଳପତି, ଦେଶର ସବୁ ନିୟନ୍ତ୍ରଣ କରିବେ । କୌଣସି ଲୋକ କୌଣସି କାମ ନିଜ ଇଚ୍ଛାନୁସାରେ କରିପାରିବ ନାହିଁ । ମନୁଷ୍ୟ ଯନ୍ତ୍ରପରି କାର୍ଯ୍ୟ କରିବ । ତାହାର ଖାଇବା, ପିଇବା, ଶୋଇବା ଇତ୍ୟାଦି ସବୁ କାମ ତାର ଇଚ୍ଛାଧୀନ ନୁହେଁ । ଅନ୍ୟଜଣଙ୍କ ଆଦେଶକୁ ମାନି ସବୁବେଳେ ସବୁକାମ ମନୁଷ୍ୟ କରିବାକୁ ବାଧ୍ୟ ହେବ । ସାମ୍ୟବାଦରେ ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶ ପାଇବା କଷ୍ଟକର । ସାମ୍ୟବାଦର ମୂଳମନ୍ତ୍ର ହେଉଛି, ସମସ୍ତେ ସମାନ ଭାବରେ ସୁଖ ଦୁଃଖ ଭୋଗ କରିବେ । ସୁଖ ଦୁଃଖ ଭୋଗ କରିବାରେ କୌଣସି ପାର୍ଥକ୍ୟର ଚିହ୍ନ ଦେଶରେ ରହିବ ନାହିଁ । ମନୁଷ୍ୟ ସୁଖ ଭୋଗ କରିବାକୁ ଇଚ୍ଛାକଲେ ତାକୁ ପ୍ରଥମେ ଦୁଃଖ ଭୋଗ କରିବାକୁ ପଡ଼େ । ସୁତରାଂ ସମସ୍ତେ ସମାନ ପରିମାଣରେ ସୁଖ ଦୁଃଖ ଭୋଗ କରିପାରିବା ଭଳି ଦେଶ ଓ ସମାଜକୁ ଗଢ଼ିବାକୁ ହେଲେ ଦେଶର

ପ୍ରତ୍ୟେକ ବ୍ୟକ୍ତି ତାର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟକୁ ତ୍ୟାଗ କରିବାକୁ ପଡ଼ିବ । ତାହା ନ ହେଲେ ସାମ୍ୟବାଦ ମତରେ ଦେଶକୁ ବଡ଼ କରି ଗଢ଼ିହେବ ନାହିଁ । ଏହିପରି ସାମ୍ୟବାଦ ମତକୁ ଗ୍ରହଣକରି ରୁଷଦେଶ ଆଜି ପୃଥିବୀରେ ଗୋଟିଏ ଶକ୍ତିଶାଳୀ ଦେଶ ହୋଇ ପାରିଛି । କିନ୍ତୁ ବଳ ପ୍ରୟୋଗକରି ଜନସାଧାରଣଙ୍କୁ କାର୍ଯ୍ୟ କରିବାକୁ ବାଧ୍ୟ ନ କଲେ ମନୁଷ୍ୟ ସ୍ୱତଃପ୍ରବୃତ୍ତ ହୋଇ ସବୁକାମ ସବୁବେଳେ କରିବାକୁ ଇଚ୍ଛା କରିବ ନାହିଁ । ତେଣୁ ସାମ୍ୟବାଦରେ ବଳ ପ୍ରୟୋଗ ଆବଶ୍ୟକ ।

## ପୃଥିବୀରେ ଯୁଦ୍ଧର ଆତଙ୍କ

ପ୍ରଜାତନ୍ତ୍ର ଓ ସାମ୍ୟବାଦ ଦୁଇପ୍ରକାର ଶାସନନୀତି ପୃଥିବୀରେ ବର୍ତ୍ତମାନ ପ୍ରତିଷ୍ଠା ଲାଭ କରିଛି । ମାନବ ସମାଜର କଲ୍ୟାଣ ସାଧନ ଉଭୟ ମତର ଲକ୍ଷ୍ୟ । ଲକ୍ଷ୍ୟରେ ପାର୍ଥକ୍ୟ ନାହିଁ । ଲକ୍ଷ୍ୟ ସ୍ଥଳରେ ପହୁଞ୍ଚିବା ମାର୍ଗରେ କେବଳ ପାର୍ଥକ୍ୟ ରହିଛି । ପ୍ରତ୍ୟେକ ନିଜ ନିଜର ମାର୍ଗରେ ଅଟଳ ବିଶ୍ୱାସ ରଖିଛନ୍ତି । କିନ୍ତୁ ସାମ୍ୟବାଦ ଆଦର୍ଶକୁ ଗ୍ରହଣ କରିଥିବା ଦେଶସବୁ ପ୍ରଜାତନ୍ତ୍ର ଶାସନକୁ ଧନୀର ଦରିଦ୍ରକୁ ଶୋଷଣନୀତି କହି ତାହା ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଛନ୍ତି ।

ପ୍ରଜାତନ୍ତ୍ର ମତରେ ପ୍ରତିଷ୍ଠିତ ଇଂଲଣ୍ଡ ଓ ଆମେରିକା ପ୍ରଭୃତି ଦେଶ ଏହି ଆକ୍ରମଣର ଘୋର ପ୍ରତିରୋଧ କରିବାକୁ ପ୍ରସ୍ତୁତ । ସେମାନଙ୍କ ଦୃଷ୍ଟିରେ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ମନୁଷ୍ୟର ଅମୂଲ୍ୟ ଧନ । ବିଜ୍ଞାନ ବଳରେ ମନୁଷ୍ୟ ଜୀବନକୁ ସୁଖମୟ କରି ଗଢ଼ିବାକୁ ନିତ୍ୟ ନୂତନ ଉପାଦାନ ଆବିଷ୍କାର କରାଯାଉଛି । ଏହି ନୂତନ ଉପଭୋଗ୍ୟ ସାମଗ୍ରୀ ପାଇବାକୁ ସମସ୍ତଙ୍କ ପାଇଁ ସୁବିଧା ସୁଯୋଗ ସୃଷ୍ଟି କରିବା ପ୍ରଜାତନ୍ତ୍ର ଶାସନର

କାର୍ଯ୍ୟ । ମନୁଷ୍ୟ ତାର ବୁଦ୍ଧିବଳରେ ଶକ୍ତି ଅର୍ଜନ କରି ସମସ୍ତ ଉପଭୋଗ୍ୟ ସାମଗ୍ରୀ ଭୋଗକରିବାରେ କୌଣସି କଟକଣା, ନାହିଁ । ସମସ୍ତଙ୍କର ସବୁ ଜିନିଷ ଦରକାର ପଡ଼େ ନାହିଁ । ଯାହାର ଯାହା ଦରକାର ସେ ତାହା ପାଇପାରୁଛି ଏବଂ ପାଇପାରିବ । ଦେଶ ଓ ସମାଜକୁ ଗଠନ କରିପାରିଲେ ପ୍ରତ୍ୟେକ ମନୁଷ୍ୟ ନିଜର ଶକ୍ତି ଅନୁସାରେ ପରିଶ୍ରମକରି ଜୀବନ ନିର୍ବାହ କରିବାର ପଥକୁ ସରଳ ଓ ସହଜ କରିପାରିବ । ଏଥିପାଇଁ ଦେଶରୁ ମନୁଷ୍ୟର ବ୍ୟକ୍ତିର ସ୍ୱାତନ୍ତ୍ର୍ୟକୁ ଲୋପ କରିବା ଅନାବଶ୍ୟକ । ପ୍ରଜାତନ୍ତ୍ର ଶାସନରେ ମନୁଷ୍ୟର ବ୍ୟକ୍ତିତ୍ୱ ବିକାଶ ପାଇବ । ମନୁଷ୍ୟଠାରେ ଅସୀମ ଶକ୍ତି ନିହିତ ଅଛି । ସେହି ଶକ୍ତି ବିକାଶ କରିବାକୁ ଅନୁକୂଳ ପରିସ୍ଥିତି ସବୁବେଳେ ଦେଶ ଓ ସମାଜରେ ସୃଷ୍ଟି ରହିବା ଉଚିତ । ତାହା ନ କରି ମନୁଷ୍ୟ ବ୍ୟକ୍ତିର ସ୍ୱାତନ୍ତ୍ର୍ୟକୁ ଲୋପ ସାଧନ କରୁଥିବା ସାମ୍ୟବାଦ ଏକପ୍ରକାର ଜଙ୍ଗଲର ନୀତି । ଜଙ୍ଗଲ-ନୀତିରେ କାର୍ଯ୍ୟକରିବା ବଣ ଜଙ୍ଗଲର ଅସଭ୍ୟ ମନୁଷ୍ୟ କାର୍ଯ୍ୟକଲାପରି ହେବ । ସୁତରାଂ ସାମ୍ୟବାଦ ନାମରେ ପ୍ରଜାତନ୍ତ୍ରକୁ ଲୋପ କରିବାକୁ ଯେଉଁ ସଂଗ୍ରାମର ଆହ୍ୱାନ ଏବଂ ଷଡ଼ଯନ୍ତ୍ର କରା ଯାଉଛି ତାହାର ସମ୍ମୁଖୀନ ହେବାକୁ ପଡ଼ିବ । ଏହାର ଗତିରୋଧ କରିବାକୁ ଇଂଲଣ୍ଡ ଓ ଆମେରିକାର ଲୋକେ ଦୃଢ଼ ପ୍ରତିଜ୍ଞ । ଏହିପରି ମତ ପାର୍ଥକ୍ୟରୁ ଯୁଦ୍ଧ ଆତଙ୍କ ସୃଷ୍ଟି ହୋଇଛି ।

## ଭାରତର ଅନୁସୃତ ମାର୍ଗ

ଦୁଇଶହ ବର୍ଷର ବ୍ରିଟିଶ ଶାସନକୁ ଲୋପକରି ଭାରତ ନିଜକୁ ସ୍ୱାଧୀନ କରିଛି । ସ୍ୱରାଜ୍ୟ ପାଇଲେ ଆମର ଦୁଃଖ ଦୂର କରି ହେବ ବୋଲି ଆମ୍ଭେମାନେ ଭାରତର ଜନସାଧାରଣଙ୍କୁ କହି ଆସିଛୁ ।

ବିଦେଶୀ ସରକାରଙ୍କ ଅମଳରେ ସାଧାରଣ ଭାରତବାସୀ ଭୟରେ ଜୀବନ ଯାପନ କରୁଥିଲେ । ସ୍ୱରାଜ୍ୟ ଲାଭ ପରେ ତାହାର ମନରୁ ଭୟ ଦୂର କରିବା ପ୍ରଥମ କାର୍ଯ୍ୟ । ସୁତରାଂ ଆମ ଦେଶ ଭାରତର ପ୍ରତ୍ୟେକ ପ୍ରଜାକୁ ମୁକ୍ତିଦାନ କଲାଭଳି ପ୍ରଜାତନ୍ତ୍ର ଶାସନନୀତିକୁ ଗ୍ରହଣ କରିଛି । ପ୍ରଜାତନ୍ତ୍ର ଶାସନରେ ଦେଶ ଶାସନ କରିବାର ଅଧିକାର ସମସ୍ତଙ୍କର ସମାନ । ଅଧିକାର ପାଇଲେ ଅଧିକାରକୁ ବ୍ୟବହାର କରି ନିଜକୁ, ପରିବାରକୁ ଏବଂ ନିଜ ସମାଜ ତଥା ଦେଶକୁ ସୁଖୀ କରି ଗଢ଼ିବା ପାଇଁ କୌଣସି ପ୍ରତିବନ୍ଧକ ରହେ ନାହିଁ । ଏହି କଥା ଭାରତର ପ୍ରତ୍ୟେକ ନରନାରୀ ହୃଦୟଙ୍ଗମ କରିବା ଦରକାର । ମନୁଷ୍ୟ ମନରେ ଦେଶକୁ ଆପଣାର କରି ବିଶ୍ୱର କାମ କରିବାକୁ ଭାବନା ଜାତ ନ ହେଲେ ସେ ପ୍ରାପ୍ତ ଶାସନ ଅଧିକାରର କୌଣସି ମହତ୍ତ୍ୱ ବୁଝିପାରେ ନାହିଁ । ଭାରତରେ ସାମ୍ୟବାଦ ଆଦର୍ଶ ଗ୍ରହଣ କରିଛି । କିନ୍ତୁ ତାହାର ଶାସନ ନୀତିର ମାର୍ଗକୁ ଅନୁସରଣ କରି ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ଲୋପ କରି ଦେଶକୁ ଗଢ଼ିବାକୁ ଇଚ୍ଛା କରିନାହିଁ । ପ୍ରଜାତନ୍ତ୍ର ଶାସନନୀତିର ମାର୍ଗ ଅନୁସରଣ କରି ସାମ୍ୟବାଦ ଆଦର୍ଶ ଉପଲବ୍ଧି କରି ହେବ ବୋଲି ଭାରତ ବିଶ୍ୱାସ କରେ । ସେହି ବିଶ୍ୱାସରେ ଅଟଳ ରହି ଏକ ନୂତନ ସାମ୍ୟବାଦର ଆଦର୍ଶ ପୃଥିବୀରେ ବର୍ତ୍ତମାନ ଭାରତ ପ୍ରଚାର କରୁଛି ।

## ପ୍ରାଚୀନ ଭାରତର ଶାସନ

ଦେଶର ଶାସନ ଦେଶବାସୀଙ୍କ ଭାଗ୍ୟକୁ ଗଠନ କରିବ । ଏହା ବର୍ତ୍ତମାନ ପୃଥିବୀର ମନୁଷ୍ୟମାନଙ୍କର ଗୋଟିଏ ଚିନ୍ତାଧାରା । ଏହି ଚିନ୍ତାରୁ ବର୍ତ୍ତମାନର ରାଜନୀତି ଉଦ୍ଭବ ହୋଇଛି । ଶାସନ କଳକୁ

ଆପୂର୍ତ୍ତ କରି ପାରିଲେ ଦେଶ ବାସୀଙ୍କ ମଙ୍ଗଳ ସାଧନ କରିବାକୁ ମନୁଷ୍ୟ ସାମର୍ଥ୍ୟ ଲାଭ କରିପାରୁଛି । ଏଣୁ ଶାସନ କ୍ଷମତା ଅଧିକାର କରିବାର କୌଶଳରୁ ରାଜନୀତିର ଖେଳ । ସୁତରାଂ ରାଜନୀତି ମନୁଷ୍ୟର ସୁଖ ଦୁଃଖର ମୂଳକାରଣ ହୋଇଥିବାରୁ ଦେଶର ଶାସନ କିପରି ଚାଲୁଛି ଅବା ଚାଲିବ, ତାହା ବି ଚିନ୍ତା କରିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । ପ୍ରାଚୀନ ଭାରତରେ ରାଜନୀତି ମନୁଷ୍ୟର ସୁଖ ଦୁଃଖର କାରଣ ନ ଥିଲା, ରାଜା ଦେଶକୁ କିପରି ସମ୍ଭାଳୁଥିଲେ—ତାହା ଜାଣିବା ପ୍ରଜାଙ୍କର କର୍ତ୍ତବ୍ୟ ନ ଥିଲା । ପ୍ରଜାଙ୍କ ମନ ବୁଝି ରାଜା ଦେଶକୁ ଶାସନ କରୁଥିଲେ । ରାଜାଙ୍କ କାର୍ଯ୍ୟକୁ ପ୍ରଜା କିପରି ଦୃଷ୍ଟିରେ ଦେଖୁଛନ୍ତି ତାହା ଜାଣିବା ରାଜାଙ୍କର କର୍ତ୍ତବ୍ୟ । ରାଜାଙ୍କର କୌଣସି କାର୍ଯ୍ୟରେ ଦୋଷ ପ୍ରଜା ଦେଖିବାର ଶୁଣାଗଲେ ରାଜା ତଦନୁସାରେ ନିଜକୁ ସଜାଡ଼ି ନେଉଥିଲେ । ପ୍ରାଚୀନ ଭାରତରେ ରାଜା ପ୍ରଜାଙ୍କ ମଧ୍ୟରେ ମତାମତର ଆଦାନ ପ୍ରଦାନ କିପରି ହେଉଥିଲା, ତାହାର ପ୍ରତ୍ୟକ୍ଷ ଅନୁଭୂତି ଜାଣିବା ସମସ୍ତଙ୍କ ପକ୍ଷେ କଠିନ । ଆମର ସାମାଜିକ ଜୀବନର ଗଠନ ପ୍ରଣାଳୀକୁ ଦେଖି ଅନୁମାନ କଲେ କିଛି ଜାଣି ହେଉଛି । ଆମ୍ଭର ରାମାୟଣ ମହାଭାରତ ପାଠକଲେ ତହିଁରୁ ରାଜା ଦେଶକୁ କିପରି ଶାସନ କରୁଥିଲେ ତାହା ଜାଣିବାକୁ କାହାରି ମନରେ ଆଗ୍ରହ ଜାତ ହେଉଥିଲା ବୋଲି ଜାଣି ହେଉ-ନାହିଁ । ଏହାର କାରଣ ଅନୁସନ୍ଧାନ କରିବା ମଧ୍ୟ କଷ୍ଟକର ନୁହେଁ । ବର୍ତ୍ତମାନ ଶାସନ ସମସ୍ୟାବହୁଳ ହୋଇ ପଡ଼ୁଛି । ସେତେବେଳେ ଦେଶର କୌଣସି ସମସ୍ୟା ଏପରି ନ ଥିଲା । ଦେଶର ଲୋକସଂଖ୍ୟା କମ୍ ଥିଲା । ଲୋକଙ୍କର ଅଭାବ କିଛି ନ ଥିଲା । ଜୀବନ ଅତି ସରଳ ଥିଲା । ଲୋକେ ଜୀବନ ନିର୍ବାହ କରିବାକୁ ଯାହା ଖୋଜୁଥିଲେ, ତାହା ପ୍ରଚୁର ପରିମାଣରେ ଦେଶରେ ମିଳୁଥିଲା । କୌଣସି

ଆବଶ୍ୟକ ଦ୍ରବ୍ୟ ପାଇବାକୁ ଅଧିକ ପରିଶ୍ରମ କରିବାକୁ ପଡ଼ୁ ନ ଥିଲା କିମ୍ବା ଲୋକେ ସେଥିପାଇଁ ରାଜାଙ୍କ ସାହାଯ୍ୟ ଖୋଜୁ ନ ଥିଲେ । ସେଥିପାଇଁ ରାଜା ଦେଶକୁ କିପରି ଶାସନ କରୁଥିଲେ ତାହା ଜାଣିବା ଆବଶ୍ୟକ ନ ଥିଲା ।

ଲୋକେ ଧର୍ମ ଓ ପରିବାରକୁ ମୂଳକରି ଧରିଥିଲେ । ଧର୍ମ ପାଳିବାର ସୁବିଧା କରିବା ପାଇଁ ସାମାଜିକ ସଂଗଠନ କରାଯାଇଥିଲା । ସମାଜର ମଙ୍ଗଳ ସାଧନ କରିବା ଉଦ୍ଦେଶ୍ୟରେ କର୍ତ୍ତବ୍ୟ କର୍ମକୁ ଶ୍ରେଣୀ ବିଭାଗ କରାଯାଇଥିଲା । କର୍ତ୍ତବ୍ୟ କର୍ମ କରିବାର ଯୋଗ୍ୟତା ଅଥବା ଗୁଣକୁ ବିଚାର କରି ଶ୍ରେଣୀ ବିଭାଗରେ ପ୍ରତ୍ୟେକ ନିଜ ନିଜ ଗୁଣ ଅନୁସାରେ କର୍ମ କରୁଥିଲେ । ଶ୍ରେଣୀ ଗତ କର୍ମ ପାଳନ କରିବାରେ ଉଚ୍ଚ ନୀଚ ଭାବନା ନ ଥିଲା । ଏହି ଶ୍ରେଣୀ ବିଭାଗ କର୍ମକୁ ବୁଝାଇବାକୁ ଗୀତାରେ ଉଲ୍ଲେଖ କରାଯାଇଅଛି ।

"ବ୍ରାହ୍ମଣ କ୍ଷତ୍ରିୟ ବିଶାଂ ଶୂଦ୍ରାଣାଂ ଚ ପରନ୍ତପ
କର୍ମାଣି ପ୍ରବିଭକ୍ତାନି ସ୍ୱଭାବ ପ୍ରଭବୈଃ ଗୁଣୈଃ"

ଅର୍ଥାତ୍ ହେ ପରନ୍ତପ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର-ମାନଙ୍କ କର୍ମ ସେମାନଙ୍କ ପ୍ରକୃତିଗତ, ସ୍ୱାଭାବିକ ଗୁଣ ଅନୁସାରେ ବିଭାଗ କରାଯାଇଛି । ଯେ ଯେଉଁ କର୍ମ କରିବାକୁ ଯୋଗ୍ୟ ଅର୍ଥାତ୍ ସମର୍ଥ, ତାକୁ ସେପରି କର୍ମରେ ନିଯୁକ୍ତ କରାଯାଇଛି । କର୍ମରେ ଉଚ୍ଚ ନୀଚର ଭାବନା ନାହିଁ । ପ୍ରତ୍ୟେକେ ନିଜର କର୍ମକୁ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ କର୍ତ୍ତବ୍ୟ ରୂପେ ପାଳନ କରିବେ । ତଦ୍ଵାରା ପ୍ରତ୍ୟେକେ ନିଜର ଓ ସମାଜର କଲ୍ୟାଣ ସାଧନ କରି ପାରିବେ । ସମାଜରେ ବ୍ରାହ୍ମଣ କର୍ମ ଶ୍ରେଷ୍ଠ ବୋଲି ବିବେଚିତ ହେଉଥିଲା । ବ୍ରାହ୍ମଣ କେବଳ ରାଜାଙ୍କୁ ଉପଦେଶ ପ୍ରଦାନ କରୁଥିଲା । ସମାଜର

ରକ୍ଷା କରିବା ରାଜା ଓ କ୍ଷତ୍ରିୟର ଧର୍ମ । କିନ୍ତୁ ସମାଜର ଦୁଃଖ ସୁଖ କାର୍ଯ୍ୟରେ ରାଜାଙ୍କର ଅଧିକାର ନ ଥିଲା । ଦେଶରେ ଦୁର୍ଭିକ୍ଷ କିମ୍ବା ମହାମାରୀ ଦେଖା ଦେଲେ ତାହା ରାଜାଙ୍କର ପାପର ପରିଣାମ ବୋଲି ବିବେଚିତ ହେଉଥିଲା । ରାଜା ସେଥିପାଇଁ ପ୍ରାୟଶ୍ଚିତ କରୁଥିଲେ । ମହର୍ଷି ଓ ତପସ୍ୱୀ ବ୍ରାହ୍ମଣ, ଏହିପରି ବିପଦ ବେଳେ ରାଜାଙ୍କୁ ଆସି ଉପଦେଶ ପ୍ରଦାନ କରୁଥିଲେ । ପ୍ରାଚୀନ ଭାରତରେ ସମାଜ ତଥା ଦେଶକୁ ଉନ୍ନତ କରି ଗଢ଼ିବା ପାଇଁ ଏହିପରି ବ୍ୟବସ୍ଥା କରାଯାଇଥିଲା । ସାମାଜିକ କର୍ତ୍ତବ୍ୟ କର୍ମ ପାଳନ କରି ଜୀବନକୁ ସୁଖମୟ କରିବାକୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ନାମରେ ଚାରି ଶ୍ରେଣୀ ଗଢ଼ାଯାଇଥିଲା । କାଳକ୍ରମେ ସାମାଜିକ କର୍ତ୍ତବ୍ୟ ଜନ୍ମଗତ କର୍ମରେ ପରିଣତ ହୋଇ ଗୁଡ଼ିଏ ଜାତି ସୃଷ୍ଟି ହେଲା । ପ୍ରତ୍ୟେକ ଜାତି ନିଜର ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିବାକୁ ଜାତିଆଣ ସଂଗଠନକୁ ଟାଣ କରିବାକୁ ମନ ଦେଇଛି । କିନ୍ତୁ ଦେଶରେ ରଜା କିପରି ରାଜ୍ୟ ଶାସନ କରୁଛନ୍ତି, ତାହା ଜାଣିବାକୁ ମନ ଦେଇ ନାହିଁ । କାଳକ୍ରମେ ଭାରତର ରାଜ୍ୟ ଶାସନରେ ବହୁ ପରିବର୍ତ୍ତନ ଘଟିଛି । ବିଦେଶାଗତ ବିଧର୍ମୀମାନଙ୍କର ବାରମ୍ବାର ଆକ୍ରମଣ ହୋଇ ଶେଷରେ ସେମାନେ ଦେଶର ଶାସନକୁ ଅଧିକାର କରିଛନ୍ତି । ଶ୍ରେଣୀବିଭାଗ ଅନୁସାରେ ସାମାଜିକ ସଂଗଠନର ଦୃଢ଼ ବ୍ୟୂହ ଭାଙ୍ଗିପଡ଼ିଛି । ସୁତରାଂ ବର୍ଣ୍ଣଭେଦର ଉଦ୍ଦେଶ୍ୟ ଓ ଆଦର୍ଶକୁ ସମସ୍ତେ ଭୁଲି ଯିବାରୁ ତାହା ବର୍ତ୍ତମାନ ସମାଜର କଳଙ୍କରୂପେ ଦେଖା ଦେଉଛି । ଭାରତବାସୀ ଦେଶର ଶାସନ କଥା ଭାବିବାକୁ କେବେ ମନ ବଳାଇନାହିଁ । ଆଜି ଭାରତ ଯେଉଁ ପ୍ରଜାତନ୍ତ୍ର ଶାସନ ଗ୍ରହଣ କରିଛି ତାହା ଭାରତବାସୀ ବୁଝି ପାରୁନାହିଁ । ତାହା ବୁଝିବା କଷ୍ଟ ନୁହେଁ, କିନ୍ତୁ ସମୟସାପେକ୍ଷ ।

କାରଣ ପ୍ରାଚୀନ ଭାରତର ସାମାଜିକ ଜୀବନର ଆଦର୍ଶ ବା ପାର୍ଥିବ ସ୍ୱାର୍ଥ ଭୋଗରେ ନ ରହି ତାହା ତ୍ୟାଗରେ ଥିଲା । ବର୍ତ୍ତମାନ ପାର୍ଥିବ ଭୋଗ୍ୟ ବସ୍ତୁର ସଂଗ୍ରହ ଓ ସଂରକ୍ଷଣ ଶାସନର ମାନଦଣ୍ଡ । ତେଣୁ ତାହାକୁ ଜୀବନର ଅନୁଭୂତିରେ ଜାଣିବା ଦରକାର ପଡ଼ୁଥିବାରୁ ସମସ୍ତ ଆବଶ୍ୟକ ପଡ଼ୁଛି । ଭାରତର ପ୍ରାଚୀନ ଶାସନ ଓ ବର୍ତ୍ତମାନ ଶାସନ ମଧ୍ୟରେ ଏହିଠାରେ ପାର୍ଥକ୍ୟ ।

## ଭାରତର ଆଦର୍ଶ

ଜୀବନରେ ସୁଖ ଓ ଆନନ୍ଦ ଉପଭୋଗ କରିବା ସମସ୍ତଙ୍କର ଇଚ୍ଛା । ସୃଷ୍ଟିର ଆରମ୍ଭରୁ ଆଜ ପର୍ଯ୍ୟନ୍ତ ସବୁବେଳେ ମନୁଷ୍ୟ ଚେଷ୍ଟା କରୁଛି ଜୀବନରେ ଅତ୍ୟଧିକ ଆନନ୍ଦ ଉପଭୋଗ କରିବାକୁ । ସୁଖରେ ଦିନ କଟାଇବାକୁ ବାଟ ଖୋଜିବା ଛଡ଼ା ମନୁଷ୍ୟ ମନରେ ଆଉ କୌଣସି ଚିନ୍ତା ନାହିଁ । ସୁଖରେ ଦିନ କଟାଇ ଜୀବନରେ ଅତ୍ୟଧିକ ଆନନ୍ଦ ପାଇବାକୁ ବାଟ ଆମ୍ଭ ଦେଶରେ ଆବିଷ୍କୃତ ହୋଇଥିଲା । ଆମ୍ଭ ଦେଶର ମହର୍ଷିଗଣ ବହୁ ଗବେଷଣା କରି ମାନବ ମାତ୍ରକେ ସୁଖ ଭୋଗ କରିବା ପାଇଁ ଯେଉଁ ମାର୍ଗ ବାଛି ଦେଇଛନ୍ତି ତାହାକୁ ଅନୁସରଣ କଲେ ମନୁଷ୍ୟ ନିଶ୍ଚୟ ପରମ ଆନନ୍ଦ ଉପଭୋଗ କରିପାରିବ । ଗୀତାରେ ଲେଖାଯାଇଛି—

"ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ
ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ"

ସୁଖ ଭୋଗକରିବାକୁ ଅନେକ ବାଟ ଅଛି । ସେଥିରେ ଏପରି ଗୋଟିଏ ବାଟ ଅଛି, ଯାହାର ମହତ୍ତ୍ୱ ବୁଝି ପାରିଲେ ମନୁଷ୍ୟ ଯେଉଁ ଆନନ୍ଦ ପାଇବ, ସେପରି ଆନନ୍ଦ ଆଉ କାହିଁରେ ମିଳିବ ନାହିଁ ।

ଥରେ ସେପରି ଆନନ୍ଦର ସ୍ୱାଦ ଉପଭୋଗ କରି ପାରିଲେ, ଆଉ କୌଣସି ଦୁଃଖ ତାକୁ ଦୁଃଖ ବୋଲି ଜଣାପଡ଼ିବ ନାହିଁ । ଏହିପରି ପରମ ଆନନ୍ଦ ଉପଭୋଗ କରିବାର ମାର୍ଗ ଆମ୍ଭ ଦେଶରେ ଆବିଷ୍କାର ହୋଇଥିଲା । କିନ୍ତୁ ବର୍ତ୍ତମାନ କାଳ ଓ ମନୁଷ୍ୟର ବୁଦ୍ଧି ଓ ବିଷ୍ଣୁର ଉଭୟର ପରିବର୍ତ୍ତନ ଘଟିଛି । ପୂର୍ବ କାଳରେ ପୃଥିବୀ ଅତି ବିଶାଳ ଥିଲାପରି ଜଣା ପଡ଼ୁଥିଲା । କିନ୍ତୁ ବର୍ତ୍ତମାନ ମନୁଷ୍ୟ ଚକ୍ଷୁରେ ପୃଥିବୀ ଆଉ ସେପରି ବିଶାଳ ନୁହେଁ । ପୃଥିବୀର କେଉଁ ଅଜ୍ଞାତ କୋଣରେ କିଣ ଘଟୁଛି ତାହା ମୂହୂର୍ତ୍ତକ ମଧ୍ୟରେ ମନୁଷ୍ୟ ଜାଣିପାରୁଛି । କେବଳ ଜାଣିପାରିବା ଆଶ୍ଚର୍ଯ୍ୟ କଥା ନୁହେଁ । ତାହା ମନୁଷ୍ୟର ସୁଖ ଦୁଃଖ ଅନୁଭୂତିକୁ ମଧ୍ୟ ପ୍ରଭାବିତ କରୁଛି । ସୁତରାଂ ପୃଥିବୀର ବିଭିନ୍ନ ଦେଶରେ ଘଟୁଥିବା ଘଟନା ସବୁ ଜାଣିବାକୁ ମନୁଷ୍ୟ ସବୁବେଳେ କି ଉଦ୍‌ବିଗ୍ନ ହୋଇ ଗୃହିଁ ବସିଛି ! ଏପରି ଅବସ୍ଥାରେ କୌଣସି ମନୁଷ୍ୟ କିମ୍ବା ଦେଶ ଆଉ ପୃଥିବୀର ଅନ୍ୟାନ୍ୟ ମନୁଷ୍ୟ ଓ ଦେଶଠାରୁ ଦୂରରେ ନାହିଁ । ମନୁଷ୍ୟର ସୁଖ ଦୁଃଖ ସହିତ ଦେଶର ସୁଖ ଦୁଃଖ ଏବଂ ଦେଶର ସୁଖ ଦୁଃଖ ସହିତ ଅନ୍ୟ ସବୁ ଦେଶର ସୁଖ ଦୁଃଖ ଜଡ଼ିତ ହୋଇ ରହିଅଛି । ଏଣୁ ନିଜର ସୁଖ ଦୁଃଖ କଥା ଭାବିଲେ ଦେଶର ସୁଖ ଦୁଃଖ କଥା ଭାବିବାକୁ ପଡ଼ିବ । ଦେଶର ଉନ୍ନତି ସାଧନ କରିବାକୁ ଚିନ୍ତା କଲା ମାତ୍ରକେ କିମ୍ବା ଦେଶର ଉନ୍ନତି ଅବନତିର କାରଣ ଅନୁସନ୍ଧାନ କରି ବସିଲେ ଅନ୍ୟ ଦେଶର ଜନସାଧାରଣଙ୍କ ମନକୁ ଚିହ୍ନିବାକୁ ପଡ଼ିବ । ସେହି ଦେଶର କାର୍ଯ୍ୟ ଓ ତାର ସମସ୍ୟା ମଧ୍ୟ ବିଚାର କରିବାକୁ ପଡ଼ିବ । ଗୋଟିଏ ଦେଶର ସମସ୍ୟା ସମାଧାନ କରିବାକୁ ଚିନ୍ତା କଲା ମାତ୍ରକେ ପୃଥିବୀର ସମସ୍ୟା ସମାଧାନର ପ୍ରଶ୍ନ ମନରେ ଆସି ଠିଆ ହେଉଛି । କାରଣ କୌଣସି ଦେଶର ଆଭ୍ୟନ୍ତରିକ ସମସ୍ୟାକୁ

କିଛି ବିଭ୍ରାଟ ଘଟିଲେ ତାହା ପୃଥିବୀରେ ଚହଳ ପକାଇ ଦେଉଛି ଏବଂ ଉକ୍ତ ବିଭ୍ରାଟକୁ ସଜାଡ଼ିବା ପାଇଁ ସବୁ ଦେଶର ଶାସନକର୍ତ୍ତା-ମାନେ ତତ୍ପର ହୋଇ ଉଠୁଛନ୍ତି । ଜନସାଧାରଣ ମଧ୍ୟ ଏପରି ଘଟଣାରେ ବିଚଳିତ ହୋଇ ପଡ଼ୁଛନ୍ତି । ବର୍ତ୍ତମାନ ପୃଥିବୀରେ ଏପରି ପରିସ୍ଥିତି ଘଟିଛି । ସର୍ବତ୍ର ଅଶାନ୍ତି ଓ ଦ୍ୱନ୍ଦ୍ୱ ଦେଖାଦେଉଛି । ସମସ୍ତଙ୍କ ମନରେ ସନ୍ଦେହ । ସୁଖ ଶାନ୍ତିର ବାଟ ଖୋଜିବା ପୃଥିବୀର ବର୍ତ୍ତମାନ ଏକମାତ୍ର ସମସ୍ୟା । କିନ୍ତୁ ପୂର୍ବେ ପୃଥିବୀ ବିଶାଳ ଥିଲେ ମଧ୍ୟ ଭାରତର ମହର୍ଷିଗଣ ଯେଉଁ ଶାନ୍ତି ଓ ସୁଖ ପ୍ରାପ୍ତିର ମାର୍ଗ ଦେଖାଇ ପାରିଛନ୍ତି, ତହିଁରେ ସମଗ୍ର ମାନବ ଜାତିର ମୁକ୍ତି ମାର୍ଗ ଅଛି । ଭାରତ ସତ୍ୟ ଓ ଅହିଂସାର ମାର୍ଗ ଆବିଷ୍କାର କରିଥିଲା, ବହୁକାଳ ପୂର୍ବେ ଭାରତରେ ବୁଦ୍ଧଦେବ ଏହା ପ୍ରଚାର କରିଥିଲେ— ବର୍ତ୍ତମାନ ଯୁଗରେ ମହାପୁରୁଷ ମହାତ୍ମା ଗାନ୍ଧୀ ଯେଉଁ ମାର୍ଗ ଦେଖାଇ ଭାରତର ମୁକ୍ତି ସାଧନ କଲେ, ତାହା ହିଁ କେବଳ ପୃଥିବୀରେ ଶାନ୍ତି ସ୍ଥାପନ କରିବ । ପୃଥିବୀର ଚିନ୍ତାଶୀଳ ବ୍ୟକ୍ତି ଗାନ୍ଧିଜୀଙ୍କର ସତ୍ୟ ଓ ଅହିଂସାରେ ମାନବ ସମାଜର କଲ୍ୟାଣ ସାଧିତ ହେବ ବୋଲି ମତ ପ୍ରକାଶ କରୁଛନ୍ତି । ଆମ୍ଭର ପ୍ରଧାନ ମନ୍ତ୍ରୀ ଶ୍ରୀ ଜବାହରଲାଲ ନେହେରୁ ସେହି ବାଣୀ ଜଗତକୁ ଶୁଣାଉଅଛନ୍ତି । ମାନବର ଶାନ୍ତି କାମନା ଭାରତର ଆଦର୍ଶ । ଭାରତ ବର୍ତ୍ତମାନ ତାର ସେହି ପୂର୍ବ ଆଦର୍ଶକୁ ଅନୁସରଣ କରୁଛି ମାତ୍ର ।

## ପ୍ରାଚୀନ ଓ ବର୍ତ୍ତମାନ ଆଦର୍ଶ ମଧ୍ୟରେ ପାର୍ଥକ୍ୟ

ମନୁଷ୍ୟ ବଞ୍ଚି ରହିବାକୁ ଇଚ୍ଛା କରେ ଏବଂ ନିଜ ଇଚ୍ଛାନୁସାରେ କାର୍ଯ୍ୟ କରିବାକୁ ସବୁବେଳେ ପସନ୍ଦ କରେ । କାହାରି କଥାରେ ବାଧ୍ୟ ହୋଇ ନିଜ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବାକୁ ମନୁଷ୍ୟ ପସନ୍ଦ କରେ ନାହିଁ କିମ୍ବା ସେପରି କାମ ତାର ମନରେ ଆନନ୍ଦ

ଜାତ କରାଏ ନାହିଁ । ମନୁଷ୍ୟ ନିଜ ପରିଶ୍ରମ ବଳରେ ଯାହା ଧନ ଅର୍ଜନ କରେ, ତାହା ଖର୍ଚ୍ଚ କରିବାରେ କଠୋର କଟକଣା ମାନିବା ସବୁବେଳେ ସମ୍ଭବପର ନୁହେଁ । ଜୀବନକୁ ସୁଖମୟ କରି ଗଢ଼ିବାକୁ ଭାରତରେ ସାମାଜିକ ଗଠନ ଯେପରି କରାଯାଇଥିଲା, ସେଥିରେ ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ କର୍ମ ନିରୂପଣ କରାଯାଇଥିଲା । ସେଥିରେ ସମାଜ ତଥା ଦେଶର ଶାସନଶକ୍ତିର ବଳ ପ୍ରୟୋଗରେ କୌଣସି କାର୍ଯ୍ୟ କେହି କରୁ ନ ଥିଲେ । ସ୍ୱାଭାବିକ ଭାବରେ ପ୍ରତ୍ୟେକ ବ୍ୟକ୍ତି ନିଜର କର୍ତ୍ତବ୍ୟ କର୍ମ କରି ଯାଉଥିଲା । ଏହା ହେଉଛି ମନୁଷ୍ୟର ସ୍ୱଭାବ-ସିଦ୍ଧ କର୍ମମାର୍ଗ । ଭାରତର ମନୀଷିଗଣ ମନୁଷ୍ୟର ସ୍ୱଭାବ-ସିଦ୍ଧ କର୍ମ ପ୍ରବୃତ୍ତିକୁ ଉପଲବ୍ଧି କରି ଯେପରି ଦୃଢ଼ ସଂଗଠନ କରିଥିଲେ ତାହା ବିରଳ । ଆଜି ତାହା ଅତି ପୁରୁଣା ହୋଇ ଭାଙ୍ଗି ପଡ଼ୁଛି ଅଥବା ଜୀର୍ଣ୍ଣ ସଂସ୍କାର ବଳି ଭଳି ବର୍ତ୍ତମାନ ପୂର୍ବର ସାମାଜିକ ନିୟମକୁ ପରିବର୍ତ୍ତନ କରିବାକୁ ପଡୁଛି, କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଅବସ୍ଥା ସବୁର ପରିବର୍ତ୍ତନ ଘଟେ । କିନ୍ତୁ ତଦ୍ୱାରା ଅନ୍ତର୍ନିହିତ ଶକ୍ତି ଲୋପ ପାଇପାରେ ନାହିଁ । ଭାରତର ଅନ୍ତର୍ନିହିତ ଶକ୍ତି ଲୋପ ପାଇ ନାହିଁ । ଆଜି ସେହି ଶକ୍ତିର ବିକାଶ ପାଇଁ ଭାରତ ପ୍ରଜାତନ୍ତ୍ର ଶାସନ ଗ୍ରହଣ କରି ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ଅକ୍ଷୁଣ୍ଣ ରଖିଛି । ବର୍ତ୍ତମାନ ଭାରତରେ ବାସ କରୁଥିବା ପ୍ରତ୍ୟେକ ନାଗରିକଙ୍କୁ ଆହ୍ୱାନ କରାଯାଇଛି, କଠୋର ପରିଶ୍ରମ କରି ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବାକୁ । ଏହି ଆହ୍ୱାନରେ ବଳପ୍ରୟୋଗର ଭାବନା ନାହିଁ । ଭାରତରେ ବର୍ତ୍ତମାନ ସମସ୍ତେ ସମାନ, ସମସ୍ତଙ୍କର ସମାନ ଅଧିକାର । ଜାତି କିମ୍ବା ଧର୍ମକୁ ବିଚାର କରି ମନୁଷ୍ୟ ମନୁଷ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ରଖାଯାଇ ନାହିଁ । ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବାକୁ କାମ କରିବାରେ

ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତା ଅକ୍ଷୁଣ୍ଣ ରହିଛି । ଭାରତକୁ ସର୍ବାଙ୍ଗ ସୁନ୍ଦର କରି ଗଢ଼ିବାକୁ ହେବ । ଭାରତରେ ଅନ୍ତ ଧର୍ମ କମ୍ବା ଅନ୍ତ ଦରିଦ୍ର ହୋଇ କୌଣସି ବ୍ୟକ୍ତି ବାସକରିବ ନାହିଁ । ନିଜକୁ ଉନ୍ନତ କରି ଗଢ଼ିବାକୁ ଦେଶରେ ଯାହା ସୁବିଧା ସୁଯୋଗ ସୃଷ୍ଟି ହେବ, ତାହା ଉପଭୋଗ କରିବାକୁ ସମସ୍ତଙ୍କର ସମାନ ଅଧିକାର ରହିବ । ଏହା ହିଁ ହେଉଛି ଭାରତର ଗଣତନ୍ତ୍ରସୂଚକ ଶାସନ ନୀତି । ଏଥିରେ ଜଣେ ଅନ୍ୟଜଣଙ୍କ ଉପରେ ଆଧିପତ୍ୟ ବିସ୍ତାର କରି ନିଜକୁ ଅଧିକ କ୍ଷମତାଶାଳୀ କରି ନ ପାରେ । ଧର୍ମର ଆଦର କମ୍ବା ନିର୍ଦ୍ଧନର ଅନାଦର ଭାରତରେ କେବେ ନ ଥିଲା । ରାଜ ଦରବାରରେ ସମସ୍ତେ ସମାନ ବିବେଚିତ ହେଉଥିଲେ । ଆଜି ଭାରତର ଶାସନ ବିଧାନରେ ତାହା ହିଁ ରହିଛି । କିନ୍ତୁ ପୂର୍ବକାଳରେ ପ୍ରତ୍ୟେକ ବ୍ୟକ୍ତିକୁ ରାଜ ଦରବାରର ସମସ୍ୟା ଭାବିବାକୁ ପଡ଼ୁ ନ ଥିଲା—ବର୍ତ୍ତମାନ ତାହା ଭାବିବାକୁ ପଡ଼ୁଛି । ଏହା ହିଁ ହେଉଛି ପ୍ରାଚୀନ ଓ ବର୍ତ୍ତମାନ ରାଜ ଦରବାରରେ ବୈଚିତ୍ର୍ୟ ଏବଂ ପ୍ରାଚୀନ ଓ ବର୍ତ୍ତମାନ ମଧ୍ୟରେ ପାର୍ଥକ୍ୟ ।

## ପ୍ରାଚୀନ ଦେଶ କାହାକୁ କହନ୍ତି

ଭାରତ ଆମ୍ଭର ଗୋଟିଏ ଅତି ପ୍ରାଚୀନ ଦେଶ ବୋଲି ସମସ୍ତେ କହୁଛନ୍ତି । ପୃଥିବୀ ବକ୍ଷରେ ଭାରତ ପରି ଆଜି ସବୁ ଦେଶ ରହିଛି । ଭାରତକୁ ପ୍ରାଚୀନ କହିବାର ଅର୍ଥ କଣ ? ମନୁଷ୍ୟକୁ ଚିହ୍ନିବାର ମାପକାଠି ତାହାର କାର୍ଯ୍ୟ ଓ ଚିନ୍ତା—ଦେଶକୁ ଚିହ୍ନିବାକୁ ହେଲେ ତାହାର ସାମାଜିକ ଜୀବନ, ସାମାଜିକ ପରିସ୍ଥିତି—ଦେଶବାସୀଙ୍କ ଜ୍ଞାନ ଚର୍ଚ୍ଚା ଓ ନୈତିକ ଆଦର୍ଶ ଇତ୍ୟାଦି ବିଷୟ ବିଚାର କରିବାକୁ ପଡ଼େ । ଏ ସବୁର ବିଚାର କଲେ ପ୍ରଥମେ ଜ୍ଞାନର ଆଲୋକ

ଭାରତକୁ ଯେପରି ଆଲୋକିତ କରିଥିଲା ଏବଂ ମାନବ ସଭ୍ୟତା ଭାରତରେ ଯେପରି ଉନ୍ନତି ଲାଭକରିଥିଲା ସେପରି ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ପୃଥିବୀରେ ଅନ୍ୟ କେତେକ ଦେଶରେ ମାନବ ସଭ୍ୟତା ଉନ୍ନତ ଅବସ୍ଥାରେ ପହଁଚିଥିଲା ସତ୍ୟ, କିନ୍ତୁ କାଳର ଗର୍ଭରେ ସେସବୁର ନାମ ଲୋପ ପାଇଯାଇଛି । ଭାରତ ଅଦ୍ୟାବଧି ତିଷ୍ଠିଛି ଏବଂ ତାହାର ପ୍ରାଚୀନ ସଭ୍ୟତାର ଆଲୋକ ହ୍ରାସ ପାଇଥିବାରୁ ଜଗତକୁ ପଥ ଦେଖାଇବାରେ ଅସମର୍ଥ ହୋଇ ପଡ଼ିଛି । ଭାରତ ଅତି ବୈଭବଶାଳୀ ଥିଲା । ତାହାର ବୈଭବ ମଧ୍ୟ ଲୋପ ପାଇଛି । ଭାରତବାସୀ ତାହାର ଦେଶକୁ ଭୁଲି ଯାଇଛି । ତାହାର ଦୁର୍ଗତିର ସୀମା ନାହିଁ । ବହୁଦେଶ ତଳକୁ ଖସିପଡ଼ି ଲୋପ ପାଇ-ଯାଇଛନ୍ତି । କିନ୍ତୁ ଭାରତ ତଳତଳାନ୍ତ ହେଲେ ମଧ୍ୟ ଲୋପ ପାଇ ପାରିନାହିଁ । ବରଂ ପୁଣି ଉପରକୁ ଉଠିବାକୁ ନୂତନ ଶକ୍ତି ଲାଭ କରିଛି । ଜଗତକୁ ନୂତନ ବାଣୀ-ତଥା ଶାନ୍ତିର ମାର୍ଗ ଦେଖାଇବାକୁ ସମର୍ଥ ହୋଇଛି । ଭାରତ ଯେଉଁ ଆଦର୍ଶ ଅନୁସରଣ କରି ନିଜର ରାଜନୈତିକ ମୁକ୍ତି ଅର୍ଜନ କରି ପାରିଛି, ତାହା ହେଉଛି ତାହାର ପୂର୍ବ ସଭ୍ୟତାର ଚିହ୍ନ । ତାହା ହିଁ ହେଉଛି ଭାରତର ଅନ୍ତର୍ନିହିତ ଶକ୍ତି—ସେହିଶକ୍ତି ନୂତନ ନୁହେଁ, ତାହା ପୁରାତନ ଏବଂ ଅତି ପ୍ରାଚୀନ । ତେଣୁ ଭାରତକୁ ଗୋଟିଏ ପ୍ରାଚୀନ ଦେଶ ବୋଲି କୁହାଯାଉଛି । ପ୍ରାଚୀନ ଭାରତ ସମସ୍ତ ମାନବ ଜାତିର କଲ୍ୟାଣ କାମନାରେ କାର୍ଯ୍ୟ କରୁଥିଲା । ଆଜି ତାହା ହିଁ କରିବ । ପୂର୍ବେ କୌଣସି ଦେଶ ଜୟ କରି ନିଜର ଆଧିପତ୍ୟ ବିସ୍ତାର କରିବାର ଆକାଙ୍‌କ୍ଷା ପୋଷଣ କରି ନ ଥିଲା । ବର୍ତ୍ତମାନ ମଧ୍ୟ ସେପରି ଆକାଙ୍‌କ୍ଷା ନାହିଁ । ଭାରତର ନୂତନ କଳେବରକୁ ସବଳ କରି ଗଢ଼ିବା ବର୍ତ୍ତମାନ ଭାରତର ଏକମାତ୍ର ଲକ୍ଷ୍ୟ । କାରଣ ଯେଉଁ ଦୋଷ

ଦୁର୍ବଳତାରୁ ଭାରତର ଅଧଃପତନ ଘଟିଲା, ସେପରି ଦୁର୍ବଳତା ନୂତନ ଭାରତର ଅବୟବରେ ଆଉ ରହିବ ନାହିଁ ।

## ଭାରତର ଦୁର୍ବଳତା

ଭାରତକୁ ସବଳ କରି ଗଢ଼ିବା ଆମ୍ଭର ଲକ୍ଷ୍ୟ । ଯେଉଁସବୁ ଦୁର୍ବଳତା ଦେଖାଦେବାରୁ ଭାରତକୁ ବହୁ ଦୁଃଖ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ିଲା, ତାହାର ଲକ୍ଷଣ କଣ ଜାଣିବା ଦରକାର । ଭାରତବାସୀର ହୃଦୟରେ ଦେଶାତ୍ମବୋଧ ଜ୍ଞାନର ଅଭାବ ହେଉଛି, ତାହାର ପ୍ରଧାନ ଦୁର୍ବଳତା । ଭାରତର ଆତ୍ମଶକ୍ତି ଅତି ମହାନ୍ । ଯୁଗ ଯୁଗ ବ୍ୟାପୀ ଏହି ମହାନ୍ ଜୀବନୀ ଶକ୍ତି ଭାରତର ଅନ୍ତର ପ୍ରଦେଶରେ ପ୍ରବାହିତ ହେଉଛି । 'ଏହିପରି ଆତ୍ମଶକ୍ତିରେ ବଳୀୟାନ ଦେଶବାସୀଙ୍କ ହୃଦୟରେ ଦେଶାତ୍ମବୋଧ ଜ୍ଞାନର ଅଭାବ ଘଟିବାର କାରଣ କଣ ?' ଏହି ପ୍ରଶ୍ନ ମନରେ ସ୍ୱତଃ ଜାଗି ଉଠେ । ଏହି ପ୍ରଶ୍ନ ବିଚାରକଲେ ଅନେକ ଭାବନା ମନରେ ଜାଗି ଉଠେ । ସେସବୁର ଆଲୋଚନା କରିବା ଏ ଲେଖାର ଉଦ୍ଦେଶ୍ୟ ନୁହେଁ । ଏଠାରେ ଏତିକ କହିବାକୁ ପଡ଼ୁଛି ଯେ, ଆମ୍ଭର ସାମାଜିକ ସଂଗଠନ ଯେପରି ଏବଂ ଯେଉଁ ଉଦ୍ଦେଶ୍ୟରେ ଗଢ଼ାଯାଇଥିଲା ସେଥିରେ ଦେଶ କଥା ସମସ୍ତଙ୍କର ବିଚାର କରିବା ପ୍ରଶ୍ନ ନ ଥିଲା । ଦେଶ କଥା କହିଲେ ଦେଶର ଶାସନ ସମସ୍ୟା ଏଠାରେ ବୁଝିବାକୁ ହେବ । କାରଣ ମନୁଷ୍ୟର ସୁଖ ଦୁଃଖ ଦେଶର ଶାସନ ଉପରେ ନିର୍ଭର କରୁ ନ ଥିଲା । କାରଣ ଜୀବନ ନିର୍ବାହ କରିବା କଠିନ ନ ଥିଲା । ଭୋଗ ବିଳାସ କରିବା ଜୀବନର ଆଦର୍ଶ ନ ଥିଲା । ତେଣୁ ଭୋଗ ବିଳାସ ଦ୍ରବ୍ୟ କେହି ଖୋଜୁ ନ ଥିଲେ କିମ୍ବା ସେ ସବୁ ଦ୍ରବ୍ୟ ସୃଷ୍ଟି ହୋଇ ବଜାର ହାଟରେ ବିକି ହେଉ ନ ଥିଲା । ଧର୍ମ

ପାଳନ ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା । ଧର୍ମପାଳିବା ମାର୍ଗକୁ ସରଳ କରିବା ପାଇଁ ସାମାଜିକ ଜୀବନକୁ ବିଭିନ୍ନ ଭାଗରେ ବିଭାଜନ କରାଯାଇଥିଲା । ସେଥିରେ ପରିବାରକୁ କେନ୍ଦ୍ର କରି ସମାଜର ମଙ୍ଗଳ ପାଇଁ କର୍ତ୍ତବ୍ୟ କର୍ମ ସାଧନ କରିବାର ସୋପାନ ମାତ୍ର ବନ୍ଧା ଯାଇଥିଲା । ଲୋକେ ପରିବାର ଏବଂ ଗ୍ରାମର ଭଲମନ୍ଦ କଥା ଚିନ୍ତା କରୁଥିଲେ । ଭାରତ ଗୋଟିଏ ଦେଶ ଏବଂ ସେଥିରେ ବାସ କରୁଥିବା ନରନାରୀ ସମସ୍ତେ ଗୋଟିଏ ଜାତି, ଏପରି ଭାବନା କାହାରି ମନକୁ ସ୍ପର୍ଶ କରିଥିଲାପରି ଜଣା ପଡ଼ୁନାହିଁ । ଶାସନନୀତିର ବିଚାର କରି ଯାଇଛି । ରାଜାର କର୍ତ୍ତବ୍ୟ ପାଳନର କଥା ତହିଁରେ ଅଛି । କିନ୍ତୁ ଦେଶର ଭୌଗଳିକ ରୂପରେଖକୁ ମନରେ ରଖି ତାକୁ ସମୃଦ୍ଧିଶାଳୀ କରି ଗଢ଼ିବାପାଇଁ ଭାବନା ପ୍ରତ୍ୟେକ ଦେଶ-ବାସୀଙ୍କ ହୃଦୟରେ ଜାଗ୍ରତ କରାଇବା ପ୍ରଶ୍ନ ବିଚାର କରାଯାଇ ନାହିଁ । ଏପରି ପ୍ରଶ୍ନ ଉଠିନାହିଁ କିମ୍ବା ଉଠିବା ମଧ୍ୟ ଆବଶ୍ୟକ ନ ଥିଲା, ତେଣୁ ଭାରତବାସୀ ମନରେ ଦେଶାତ୍ମବୋଧ ଜ୍ଞାନ ଉପଲବ୍ଧି କରିବା ସମ୍ଭବପର ହୋଇନାହିଁ ।

ଭାରତ କେତେଗୁଡ଼ିଏ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲା । ସାନବଡ଼ ହୋଇ କେତେ ରାଜବଂଶ ଭାରତରେ ରାଜ୍ୟ ବିସ୍ତାର କରି ଅକ୍ଷୟ କୀର୍ତ୍ତି ଅର୍ଜନ କରିଯାଇଛନ୍ତି । ଧର୍ମନୀତି ଓ ଧର୍ମପାଳନ ପାଇଁ ରଚିତ ସ୍ମୃତି-ଶାସ୍ତ୍ର କେବଳ ଭାରତବାସୀଙ୍କୁ ଏକ ସୂତ୍ରରେ ବାନ୍ଧି ରଖିଛି । ଧର୍ମ ସଂସ୍କାରକମାନେ ଧର୍ମ ପାଳିବା ପାଇଁ ଭାରତର ଚତୁଃପାର୍ଶ୍ୱରେ ଚାରିଧାମ ପ୍ରତିଷ୍ଠା କରି ସମସ୍ତଙ୍କ ହୃଦୟରେ ଐକ୍ୟ ଭାବନା ଜାଗ୍ରତ କରାଇବାର ବିରାଟ କଳ୍ପନା କରିଥିଲେ । ଭାରତରେ ବିକ୍ରମାଦିତ୍ୟ ଅତି ବୃହତ୍ ସାମ୍ରାଜ୍ୟ ସ୍ଥାପନ କରି ଦେଶକୁ ଅନେକ ବିଷୟରେ ଉନ୍ନତ କରି ଗଢ଼ିବାକୁ ଚେଷ୍ଟା କରିଛନ୍ତି ଏବଂ ଗୋଟିଏ

ଶକାବ୍ଦ ପ୍ରଚଳନ କରିଗଲେ । ସେହି ବିକ୍ରମ ଶକାବ୍ଦକୁ ବର୍ତ୍ତମାନ ଭାରତରେ ସମସ୍ତେ ମାନି ଚଳୁଛନ୍ତି । ଦେଶକୁ ଗୋଟିଏ ବିରାଟ ରୂପରେଖ ଦେଇ ଦେଶବାସୀଙ୍କ ମନରେ ଦେଶାତ୍ମବୋଧ ଜ୍ଞାନ ଜାଗ୍ରତ କରାଇବାର କିଛି କଳ୍ପନା କରାଯାଇଥିଲା ବୋଲି ଏଥିରୁ ପ୍ରମାଣିତ ହୁଏ । ଜଗଦ୍‌ଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟ ମଧ୍ୟ ଏହି ଉଦ୍ଦେଶ୍ୟରେ ଭାରତର ଚାରି ପୀଠରେ ଚାରିଧାମ ପ୍ରତିଷ୍ଠା କରି ଯାଇଛନ୍ତି । ରାମାୟଣ ଓ ମହାଭାରତ ଯୁଗର କଥା ଦେଖିବାକୁ ଗଲେ ଭଗବାନ ଶ୍ରୀକୃଷ୍ଣ କେବଳ ଖଣ୍ଡ ବିଖଣ୍ଡ ଭାରତକୁ ମହାଭାରତରେ ପରିଣତ କରିବାକୁ କଳ୍ପନା କରିଥିଲେ । ରାମାୟଣ ମହାଭାରତ ପାଠରୁ ଜଣାପଡ଼େ, ଜ୍ଞାନ ବିଜ୍ଞାନରେ ଭାରତ ଅତି ଉନ୍ନତ ଅବସ୍ଥାରେ ପହଞ୍ଚିଥିଲା । ପୁଷ୍ପକ ବିମାନ ଓ ବ୍ରହ୍ମାସ୍ତ୍ରର କଥା ସେଥିରେ ଲେଖା-ଅଛି । ତାହା ତ ବର୍ତ୍ତମାନର ବ୍ୟୋମଯାନ ଓ ପରମାଣୁ ଅସ୍ତ୍ର ଅପେକ୍ଷା ଅଧିକ ଉନ୍ନତ ଥିଲା । ସେତେବେଳେ ମାରଣାସ୍ତ୍ର ପ୍ରୟୋଗ କରି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ କରିପାରୁଥିଲେ, କିନ୍ତୁ ତାହା ପୃଥିବୀରେ ଅବାଞ୍ଛିତ ଓ ଅନାବଶ୍ୟକ ସମୂହ-ଧ୍ୱଂସଲୀଳା ସୃଷ୍ଟି କରୁ ନ ଥିଲା । ଏସବୁ କଥା ରାମାୟଣ ମହାଭାରତ ଯୁଗର କଥା । ଏହି ମହାଭାରତ, ରାମାୟଣ ଏବଂ ଧର୍ମ ପାଳନ ଓ ଆଚରଣ ପାଇଁ ରଚିତ ଧର୍ମଶାସ୍ତ୍ର ଭାରତ ହିନ୍ଦୁ ସମାଜକୁ ଏକାଠି ବାନ୍ଧି ରଖିଛି ସତ୍ୟ, କିନ୍ତୁ ଦେଶର ଶାସନ-ନୀତିର ପରିକଳ୍ପନାରେ ଦେଶବାସୀଙ୍କୁ ଦାୟିତ୍ୱ ଜ୍ଞାନ ଶିକ୍ଷା ଦେବାକୁ ଅସମର୍ଥ ହୋଇଛି । ଏହି କାରଣରୁ ଦେଶର ହିନ୍ଦୁ ରାଜାମାନେ ପରସ୍ପରର ରାଜ୍ୟବିସ୍ତାର କରିବାକୁ ଅନବରତ ଲଢ଼ାଇ କରିଛନ୍ତି । ଦେଶ ଲୁଣ୍ଠନ କରିବାକୁ ଯେତେ ଆକ୍ରମଣ ହେଲା ତାହାର ମିଳିତ ପ୍ରତିରୋଧ କରିପାରିଲେ ନାହିଁ । ଶେଷରେ ହିନ୍ଦୁ ରାଜାଙ୍କ ଈର୍ଷାଜନିତ ଷଡ଼ଯନ୍ତ୍ରରେ ଦିଲ୍ଲୀର ରାଜସିଂହାସନ ପଠାଣ ରାଜା ଦଖଲ କଲେ ।

ମହମ୍ମଦଘୋରୀ ଦିଲ୍ଲୀର ରାଜା ପୃଥ୍ୱୀସିଂହକୁ ପରାସ୍ତ କରି ଦିଲ୍ଲୀରେ ପଠାଣ ରାଜ୍ୟ ସ୍ଥାପନ କଲେ । ଭାରତକୁ ମହାଭାରତ ରୂପରେ ଦର୍ଶନ କରି ତାହାଁର ମହାତ୍ମ୍ୟ ଓ ଗୌରବ ଉପଲବ୍‌ଧି କରିବାକୁ ଶାସ୍ତ୍ର, ପୁରାଣ, ତୀର୍ଥ ପର୍ଯ୍ୟଟନ ଆଦି ଯେତେ ସବୁ ବ୍ୟବସ୍ଥା କରାଯାଇ ଥିଲା, ସେସବୁ କାର୍ଯ୍ୟରେ ରହିଲା ଏବଂ ଅଦ୍ୟାବଧି ଅଛି । କିନ୍ତୁ ସେଥିରେ ଜୀବନୀ ଶକ୍ତି ସଞ୍ଚାରଣ କରିବାର ଶକ୍ତି ଆଉ ରହିଲା ନାହିଁ । ବିଦେଶୀ ଓ ବିଧର୍ମିମାନଙ୍କ ଆକ୍ରମଣରୁ ନିଜର ଆତ୍ମସମ୍ମାନ ରକ୍ଷାକରିବାକୁ ହିନ୍ଦୁସମାଜ ଦିନକୁଦିନ ରକ୍ଷଣଶୀଳ ହୋଇ ପଡ଼ିଲା ଏବଂ ଦେଶଚିନ୍ତା ଉଭେଇ ଗଲା ।

ମହମ୍ମଦ ଘୋରୀ ଦିଲ୍ଲୀର ଅଧୀଶ୍ୱର ହେଲେ । କିନ୍ତୁ ସେଥିପାଇଁ ଭାରତରେ ସେତେବେଳର ରାଜାମାନଙ୍କ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି ହେଲାନାହିଁ । କ୍ରମଶଃ ଜଣକ ପରେ ଜଣକୁ ପରାସ୍ତ କରି ଭାରତରେ ପଠାଣ ରାଜାମାନେ ସେମାନଙ୍କର ରାଜ୍ୟ ବିସ୍ତାର କରିଥିଲେ । ପଠାଣ ସାମ୍ରାଜ୍ୟ ପରେ ଭାରତରେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠିତ ହେଲା । ମୋଗଲ ରାଜତ୍ୱରେ ଭାରତ ଅତ୍ୟନ୍ତ ସମୃଦ୍ଧିଶାଳୀ ହୋଇ ଉଠିଲା । ପଠାଣ ଓ ମୋଗଲ ରାଜାମାନେ ନିଜକୁ ଭାରତବାସୀ ବୋଲି ଭାବୁଥିଲେ । ଦିଲ୍ଲୀର ମୋଗଲ ବାଦଶାହ ଆକବର ଜଣେ ଅତି ପରାକ୍ରମଶାଳୀ ସମ୍ରାଟ । ସେ ଭାରତରେ ହିନ୍ଦୁ ମୁସଲମାନଙ୍କ ମିଳନରେ ଭାରତକୁ ଅତି ସମୃଦ୍ଧିଶାଳୀ କରି ଗଢ଼ିବାକୁ ବହୁ ଚେଷ୍ଟା କରି ଯାଇଛନ୍ତି । ଆକବର ବାଦସାହଙ୍କ କଳ୍ପନା କାର୍ଯ୍ୟରେ ପରିଣତ ହୋଇ ପାରିଥିଲେ ଆଜି ଭାରତ ପୃଥିବୀରେ ସବୁଠାରୁ ଅତି ବଡ଼ ଉନ୍ନତ ଓ ଶକ୍ତିଶାଳୀ ଦେଶ ହୋଇ ଠିଆ ହୋଇଥାନ୍ତା । ଭାରତର ପୁରପଲ୍ଲୀ ଧନ ଦୌଲତରେ ଉଛୁଳି ପଡୁଥାନ୍ତା । କିନ୍ତୁ ଭାରତର ଭାଗ୍ୟରେ ଦୁଃଖ ଓ ନିର୍ଯ୍ୟାତନ ଭୋଗ କରିବାକୁ ଅଛି ।

ବିଧିର ବିଧାନ ଅନ୍ୟଥା କିଏ କରିବ ? କେତେକ ମୋଗଲ ବାଦ-ସାହମାନଙ୍କ ଧର୍ମରେ ଭେଦନୀତି ପାଳନ ଯୋଗୁଁ ଦେଶରେ ବିଦ୍ରୋହ ଭାବ ଜନ୍ମ ନେଇଥିଲା । ମରହଟ୍ଟା, ଶିଖ ଓ ରାଜପୁତମାନଙ୍କ ବିଦ୍ରୋହ ହେତୁ ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇ ଭାଙ୍ଗି ପଡ଼ିଲା । ଦେଶ ପୁଣି ଖଣ୍ଡ ବିଖଣ୍ଡ ହେବାରୁ ରାଜ୍ୟ ବିସ୍ତାର କରିବାପାଇଁ ଅନବରତ ଦେଶରେ ବିବାଦ ଲାଗିରହିଲା । ହିନ୍ଦୁ ମୁସଲମାନ ମିଳନରେ ଭାରତକୁ ଉନ୍ନତ କରିବାକୁ ଆକବର ବାଦଶାହଙ୍କ କଳ୍ପନା କଳ୍ପନାରେ ରହିଗଲା । ତାହାଙ୍କ ବଂଶଧର କେହି ତାହାଙ୍କ କଳ୍ପନାର ମର୍ମ ବୁଝିଲେ ନାହିଁ । ମୋଗଲ ସାମ୍ରାଜ୍ୟକୁ ଭାଙ୍ଗି ଯେଉଁ ଶକ୍ତି ଛତ୍ରପତି ଶିବାଜୀ ଜାଗ୍ରତ କରିଗଲେ, ସେହି ଶକ୍ତିର ବଳରେ ମରହଟ୍ଟାମାନେ ସାମ୍ରାଜ୍ୟ ବିସ୍ତାର କଲେ । କିନ୍ତୁ ମରହଟ୍ଟା ଶକ୍ତି ହିନ୍ଦୁ ରାଷ୍ଟ୍ର ଗଠନ କରିବାର କଳ୍ପନା କରିଥିଲେ । ସେମାନଙ୍କ ଶାସନରେ ଲୁଣ୍ଠନ ପ୍ରବୃତ୍ତି ବଳବତ୍ତର ଥିଲା । ତେଣୁ ସେମାନଙ୍କ ମଧ୍ୟରେ ଅନ୍ତର୍ବିବାଦ ଜାତ ହୋଇ କ୍ରମଶଃ ଦୁର୍ବଳ ହୋଇ ପଡ଼ିଲା । ମରହଟ୍ଟା ଶାସକମାନଙ୍କ ମଧ୍ୟରେ ଦେଶାତ୍ମବୋଧ ଜ୍ଞାନ ପ୍ରବଳ ଥିଲା । କିନ୍ତୁ ହିନ୍ଦୁ ମୁସଲମାନଙ୍କ ମିଳନରେ ଭାରତକୁ ଶକ୍ତିଶାଳୀ କରି ଗଢ଼ିବାକୁ ସେମାନେ କଳ୍ପନା କରିପାରି ନ ଥିଲେପରି ଅନୁମାନ ହୁଏ । ସୁତରାଂ ଭାରତ ଦୁର୍ବଳ କାହିଁକି ହେଲା । ଆଜି ଭାରତର ଦୁର୍ବଳତାର କାରଣ କଣ ତାହା ଏଥିରୁ ଜାଣିହେବ ।

## ଭାରତର ବିଭବ

ଭାରତ ଆମର ଗୋଟିଏ ଅତି ପୁରୁଣା ଦେଶ । ଭାରତ ବିଭ-ବର ଅସରନ୍ତି ଭଣ୍ଡାର । ଏ ଦେଶ ବାରମ୍ବାର ଲୁଣ୍ଠିତ ହୋଇଥିଲେ ମଧ୍ୟ ହୀରା, ନୀଳା, ମୋତି, ମାଣିକ୍ୟ ଓ ସ୍ବର୍ଣ୍ଣ ଆଦି ବହୁମୂଲ୍ୟ ପଦାର୍ଥ

ଅପରିମିତ ପରିମାଣରେ ପରିପୂର୍ଣ୍ଣ ଥିଲା । ମୋଗଲ୍ ଅମଳରେ ଜନୈକ ବାଦଶାହ ତାଙ୍କ ଦେଶରେ କେତେ ସ୍ୱର୍ଣ୍ଣ ଅଛି ତାହା ଜାଣିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଶୁଣାଅଛି ବାଦଶାହଙ୍କର ଅମାତ୍ୟଗଣଙ୍କୁ ଦିଲ୍ଲୀ ଓ ଆଗ୍ରା ନଗରୀରେ ସୁନା ଓଜନ କରିବାକୁ ଛ'ମାସ ସମୟ ଲାଗିଥିଲା । ବର୍ତ୍ତମାନ ଆମେରିକାକୁ ଆମ୍ଭେମାନେ ଧନୀ ଦେଶ ବୋଲି କହୁଚେ । ଆମେରିକାର ଧନ କଥା ଶୁଣିଲେ ଆମ୍ଭମାନଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି । ଆମ ଦେଶର ମୋଗଲ ବାଦଶାହ ଶାହାଜାହାନ ଗୋଟିଏ ମୟୂର ସିଂହାସନ କରାଇଥିଲେ । ତାହା ସ୍ୱର୍ଣ୍ଣ ଓ ହୀରା, ନୀଳା, ମୋତି, ମାଣିକ୍ୟରେ ଗଢ଼ାଯାଇଥିଲା । ଆମ୍ଭ ଭାରତ ଦେଶ ଯେତେ ବଡ଼ ଧନୀ ଦେଶ ଥିଲା, ପୃଥିବୀରେ ସେତେ-ବଡ଼ ଧନୀ ଦେଶ ନ ଥିଲା କିମ୍ବା ଏବେ ମଧ୍ୟ ନାହିଁ । ଆମ୍ଭଦେଶର ଧନ ଆଗରେ ବର୍ତ୍ତମାନ ଆମେରିକାର ଧନ ତୁଳନା କରାଯାଇ ପାରିବ ନାହିଁ । ଏପରି ଧନଶାଳୀ ଭାରତ ଦରିଦ୍ର ହେବାର କାରଣ କ'ଣ ?

## ଭାରତରେ ଇଂରେଜ ଶାସନ

ଭାରତର ବିଭବରେ ବିହ୍ୱଳିତ ହୋଇ ବିଦେଶରୁ ବଣିକ-ମାନେ ବାଣିଜ୍ୟକରିବା ଉଦ୍ଦେଶ୍ୟରେ ଭାରତରେ ପଦାର୍ପଣ କଲେ । ଭାରତର ପଣ୍ୟଦ୍ରବ୍ୟ କ୍ରୟକରି ନିଜଦେଶରେ ନେଇ ବିକ୍ରୟ କରିବା ଥିଲା ସେମାନଙ୍କ ଏକମାତ୍ର ବ୍ୟାପାର । ଭାରତ କହିଲେ ଭାରତର ଗ୍ରାମ-ଜୀବନ । ସେ ସମୟରେ ଭାରତର ଗ୍ରାମସବୁ ଉନ୍ନତ ଥିଲା । ଆବଶ୍ୟକୀୟ ଦ୍ରବ୍ୟ ଗ୍ରାମରେ ଉତ୍ପନ୍ନ କରାଯାଉଥିଲା । ଗ୍ରାମରେ ପଞ୍ଚାୟତ ଗ୍ରାମର ଭଲମନ୍ଦ ବୁଝୁଥିଲେ । ରାଜ୍ୟର ରାଜଗାଦୀରେ କୌଣସି ପରିବର୍ତ୍ତନ ଘଟିଲେ ତାହା ଗ୍ରାମ ଜୀବନକୁ

ପ୍ରଭାବିତ କରୁ ନ ଥିଲା । ମୋଗଲ ସମ୍ରାଜ୍ୟ କ୍ରମଶଃ ଦୁର୍ବଳ ହୋଇ ଭାଙ୍ଗି ପଡ଼ିଲା । ମୋଗଲ ସାମ୍ରଜ୍ୟର ପତନରେ ଯେଉଁ ହିନ୍ଦୁ ମୁସଲ-ମାନ ରାଜା ଓ ନବାବମାନଙ୍କ ରାଜ୍ୟ ନୂତନ ହୋଇ ଗଢ଼ିହୋଇ ଉଠିଥିଲା, ସେମାନଙ୍କ ମଧ୍ୟରେ ରାଜ୍ୟ ବିସ୍ତାର ଲାଳସାରେ ଅନବରତ କଳହ ଲାଗି ରହିଲା । ଏପରି ପରିସ୍ଥିତିରେ ବିଦେଶୀ ବଣିକମାନଙ୍କ ମନରେ ଏ ଦେଶରେ ରାଜ୍ୟ ସ୍ଥାପନ କରିବାର କଳ୍ପନା ଜାଗି ଉଠିଲା । ବିଦେଶୀ ବଣିକମାନଙ୍କ ମଧ୍ୟରେ ଇଂରେଜ, ଫରାସୀ ଓ ପର୍ତ୍ତୁଗୀଜଙ୍କ ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ଭାରତରେ ରାଜ୍ୟ ସ୍ଥାପନ କରିବାକୁ ଇଂରେଜ ଓ ଫରାସୀଙ୍କ ମଧ୍ୟରେ ଟଣା ଓଟରା ଲାଗି ଶେଷରେ ଇଂରେଜମାନେ, ଫରାସୀଙ୍କୁ ହଟାଇ, ସେମାନଙ୍କ ରାଜ୍ୟ ସ୍ଥାପନ କରିବାକୁ ସକ୍ଷମ ହୋଇଥିଲେ । ଭାରତ-ବାସୀଙ୍କୁ ହାତ କରି ସେହିମାନଙ୍କଠାରୁ ବଳ ଓ ସାହାଯ୍ୟ ପାଇ ଇଂରେଜ ବଣିକମାନେ ଭାରତରେ କମ୍ପାନୀ ରାଜ୍ୟ ପ୍ରଥମେ ସ୍ଥାପନ କରିଥିଲେ । ଇଂରେଜ ବଣିକମାନେ ଇଷ୍ଟ ଇଣ୍ଡିଆ କମ୍ପାନୀ ନାମରେ କମ୍ପାନୀ ଗଢ଼ି ଏ ଦେଶକୁ ବାଣିଜ୍ୟ କରିବାକୁ ଆସିଥିଲେ । ବର୍ତ୍ତମାନ ସେହି କମ୍ପାନୀଙ୍କ ହାତରେ ଭାରତର ଶାସନ ଅଧିକାର ପଡ଼ିଲା । ଭାରତର ଜନସାଧାରଣଙ୍କ ମନରେ ଦେଶପ୍ରତି କୌଣସି ପ୍ରକାର ଅନୁରାଗ ନ ଥିଲା । ତେଣୁ ସେମାନେ ବିଦେଶୀ ବଣିକଙ୍କ ନିକଟରେ ରାଜ୍ୟଶାସନ ଭାର ସମର୍ପିଦେଇ ପରାଧୀନତା ସ୍ୱୀକାର କରିଥିଲେ ।

## ଭାରତ ହତଶ୍ରୀ ହେବାର କାରଣ

ବାଣିଜ୍ୟ କରି ଧନ କମେଇବାକୁ ଇଂରେଜ ବଣିକମାନେ କମ୍ପାନୀ ଗଢ଼ି ଏ ଦେଶକୁ ଆସିଥିଲେ । ବିରାଡ଼ି କପାଳକୁ ଶିକା ଛିଣ୍ଡିଲା ଭଳି ଏ ରାଜ୍ୟ ଅଧିକାର ସେମାନଙ୍କ ହାତରେ ପଡ଼ିଲା । ସୁତରାଂ

ସେମାନଙ୍କର ଏକମାତ୍ର ଲକ୍ଷ୍ୟ ହେଲା, ଭାରତରୁ ଧନ ରତ୍ନ ନିଜ ଦେଶକୁ ବୋହି ନେବା । ପ୍ରଥମେ ସେମାନେ ଭାରତର ସଞ୍ଚିତ ଧନରତ୍ନ ଲୁଣ୍ଠନ କରି ବୋହି ନେଇଥିଲେ । ଭାରତରୁ ଅଜସ୍ର ଧନରାଶି ବିଲାତରେ ପହଞ୍ଚିବାରୁ ସେ ଦେଶରେ ଯନ୍ତ୍ରଶିଳ୍ପର ପ୍ରତିଷ୍ଠା ଓ ଉନ୍ନତି ଘଟିଲା । ବିଲାତର ଶିଳ୍ପଜାତ ଦ୍ରବ୍ୟ ଭାରତ ବଜାରରେ ବିକି କରିବା ପାଇଁ ଆମ ଦେଶର ସମସ୍ତ ପ୍ରକାର ଗ୍ରାମ୍ୟ ଓ କୁଟୀର ଶିଳ୍ପକୁ ଧ୍ୱଂସ କରି ଦିଆଗଲା । ଗ୍ରାମରେ ଜନସାଧାରଣଙ୍କର ଜୀବିକା ନିର୍ବାହ କରିବାର ବୃତ୍ତିସବୁ ଲୋପ ପାଇଯିବାରୁ ପଲ୍ଲୀଜୀବନରେ ବିଭ୍ରାଟ ଘଟିଲା । ଇଂରେଜ ବଣିକମାନେ ପ୍ରଥମେ ଏ ଦେଶରେ କଳକାରଖାନା ବସାଇଲେ । ଶାସନ ପରିଚାଳନା ଓ ବାଣିଜ୍ୟ ବେପାରର ସୁବିଧା ପାଇଁ ଭାରତର ବଡ଼ ବଡ଼ ସହର ସବୁ ଗଢ଼ି ହୋଇ ଉଠିଲା । ପେଟ ପୋଷିବାକୁ ଚାକିରି ବ୍ୟତୀତ ଅନ୍ୟ କିଛି ଉପାୟ ରହିଲା ନାହିଁ । ଗ୍ରାମରୁ ଲୋକେ କଳକାରଖାନାରେ କାମ କରିବାକୁ ସହର ଆଡ଼କୁ ଗତି କଲେ । ଇଂରେଜୀ ପାଠୁଆ ଲୋକେ ସରକାରୀ ଚାକିରି କରିବାରେ ନିଜକୁ ବଡ଼ ଗୌରବାନ୍ୱିତ ମନେକଲେ । ଦେଶ ଦରିଦ୍ର ହୋଇଯିବାରୁ ନାନାପ୍ରକାର ରୋଗ ବ୍ୟାଧି ଘୋଟି-ଗଲା । ମାଲେରିଆ ଜ୍ୱର, ହଇଜା, ବସନ୍ତ ଓ ପ୍ଲେଗ ଆଦି ସଂକ୍ରାମକ ରୋଗରେ ଲକ୍ଷଲକ୍ଷ ଲୋକ ପ୍ରାଣ ହରାଇଲେ । ଭାରତର ଜନସାଧାରଣ ଆତ୍ମବିଶ୍ୱାସ ହରାଇ ବସିଲେ । ଇଚ୍ଛାକଲେ ମନୁଷ୍ୟ ଅସାଧ୍ୟ ସାଧନ କରିପାରେ । ଏପରି ବିଶ୍ୱାସ ଆଉ କାହାରି ମନରେ ସ୍ଥାନ ପାଇଲା ନାହିଁ । ଧନବଳ ଓ ମନବଳ ସବୁ ହରାଇ ଭାରତବାସୀ ନିର୍ଜୀବ ପ୍ରାୟ ଭାଗ୍ୟକୁ ଆଦରି ପଡ଼ିରହିଲେ ।

# ଭାରତର ମୁକ୍ତି ସଂଗ୍ରାମ

ଭାରତ ଗୋଟିଏ ପ୍ରାଚୀନ ସଭ୍ୟ ଦେଶ । ଏହା କଦାପି ଏପରି ନିର୍ଜୀବ ହୋଇ ପଡ଼ୁଥିବା ପାଇଁ ରହି ନ ପାରେ । ଦେଶର ଯେପରି ଅଧଃପତନ ଘଟିଲା ଅବା ହୀନବୃଦ୍ଧିର ଘଟୁଛି ତାହା ବୁଝିବାକୁ ଅଧିକ ସମୟ ଲାଗି ନ ଥିଲା । ଇଂରେଜ କମ୍ପାନୀ-ଶାସନ ଭାରତର ଅଧଃପତନର କାରଣ, ଏହା ବୁଝିବାକୁ ଅଧିକ ସମୟ ଲାଗି ନ ଥିଲା । ଏହାର ପ୍ରତିକାର କରିବାକୁ ଜନସାଧାରଣଙ୍କ ମନରେ ଆତ୍ମବିଶ୍ୱାସ ଭାବନା ଜାଗ୍ରତ କରିବାକୁ ହେବ । ଦେଶର ଚିନ୍ତାଶୀଳ ବ୍ୟକ୍ତି ଭାରତର ପ୍ରକୃତ ସ୍ୱରୂପକୁ ଦର୍ଶନ କରିପାରିଥିଲେ । ଧର୍ମ ନାମରେ ସମାଜର ପରିବର୍ତ୍ତନ କରି ଦେଶ ତଥା ସମାଜର ସେବା ପାଇଁ ନୂତନ ଚିନ୍ତାଧାରା ସୃଷ୍ଟି କରିଥିଲେ । ରାଜନୈତିକ ଆନ୍ଦୋଳନ କରି ଇଂରେଜ ଶାସନକୁ ଦୁର୍ବଳ କରି ଭାଙ୍ଗିଦେବା ପାଇଁ ଚିନ୍ତା କରିବା ଅପେକ୍ଷା ଦେଶରେ ଆତ୍ମବିଶ୍ୱାସ ଜ୍ଞାନ ଜାଗ୍ରତ କରି ଭାବୀ-ସ୍ୱାଧୀନ ଭାରତର କଳ୍ପନା କରାଯାଇଥିଲା । କାରଣ ଇଂରେଜ ସରକାରଙ୍କ ସହିତ ଲଢ଼େଇ କରିବା ଅସମ୍ଭବ । ଜନସାଧାରଣ ଆତ୍ମବିଶ୍ୱାସ ହରାଇ ପାଶ୍ଚାତ୍ୟ ସଭ୍ୟତାର ବାହ୍ୟାଡ଼ମ୍ବରରେ ମୋହିତ ହୋଇ ପଡ଼ୁଥିଲେ । ଇଂରେଜମାନଙ୍କ ସାମାଜିକ ଜୀବନକୁ ଆଦର୍ଶରୂପେ ଅନୁସରଣ କରିବା ପରମ ପୁରୁଷାର୍ଥ ବୋଲି ବିବେଚିତ ହୋଇଥିଲା । ଯେଉଁମାନେ ଏହିପରି ଭାବୁଥିଲେ, ସେମାନେ ଭାରତର ସାମାଜିକ ଜୀବନକୁ ଭାଙ୍ଗି ଦେବାକୁ ଇଚ୍ଛା କରି ନାନା ଉତ୍ପାତ ସୃଷ୍ଟି କରିବାକୁ ଲାଗିଲେ । ଇଂରେଜୀ ପାଠ ଟିକିଏ ଜାଣିଲା ମାତ୍ରକେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାକୁ କେହି କୁଣ୍ଠାବୋଧ କରୁ ନ ଥିଲେ ।

ଇଷ୍ଟ ଇଣ୍ଡିଆ କମ୍ପାନୀ ବାଣିଜ୍ୟ ବେପାର ବୃଦ୍ଧି କରିବା ଇଚ୍ଛାରେ ଭାରତର ଶାସନ ଅଧିକାର ଦଖଲ କରି ସେମାନଙ୍କ

ଶାସନ କ୍ଷମତାକୁ ଦୃଢ଼ କରିବାକୁ ସଂଗଠନ କରିଥିଲେ । କିନ୍ତୁ ସେତିକରେ ସେମାନଙ୍କ ମନ ସନ୍ତୁଷ୍ଟ ହୋଇନାହିଁ । ସେମାନେ ଭାରତର ସାମାଜିକ ଜୀବନରେ ବିଶୃଙ୍ଖଳା ସୃଷ୍ଟିକରି ନିଜର ଧର୍ମ ଓ ସାମାଜିକ ଜୀବନକୁ ଏ ଦେଶରେ ପ୍ରଚଳନ କରିବାକୁ ଉଦ୍ୟମ କଲେ । ଖ୍ରୀଷ୍ଟିୟାନ ଧର୍ମପ୍ରଚାରକମାନଙ୍କୁ କମ୍ପାନୀ ସରକାର ଯେପରି ଉତ୍ସାହିତ କରୁଥିଲେ ତହିଁରୁ ଏହି କଥା ଜଣାପଡ଼େ । ଭାରତକୁ ଆର୍ଥିକ, ରାଜନୈତିକ, ଧାର୍ମିକ ଓ ସାମାଜିକ ସବୁ ବିଷୟରେ ଦୁର୍ବଳ ରଖି ଚିରଦିନ ପରାଧୀନ କରି ରଖିବାକୁ ଇଂରେଜ କମ୍ପାନୀ ସରକାର ଯାହାସବୁ କରୁଥିଲେ, ତହିଁର ବିସ୍ତୃତ ବର୍ଣ୍ଣନା କରିବା ଏଠାରେ ଅନାବଶ୍ୟକ । ଭାରତର ମୁକ୍ତି ସଂଗ୍ରାମର ମୂଳ ସ୍ୱରୂପ ଚିହ୍ନିବାରେ ସାହାଯ୍ୟ କରିବ ଭାବି ତହିଁର ଆଭାସ ଦିଆଗଲା । ରାଜା ରାମମୋହନ ରାଏ ନୂତନ ଭାରତର ପ୍ରତିଷ୍ଠାତା । ବ୍ରାହ୍ମଧର୍ମ ନାମରେ ସମାଜ ସଂସ୍କାର କରିବାପାଇଁ ଯେଉଁ ନୂତନ ଚିନ୍ତା ଧାରାର ପଥ ପ୍ରଦର୍ଶନ କରାଇ ପାରିଲେ, ତଦ୍ଦ୍ୱାରା ଭାରତର ଧର୍ମ ଓ ସମାଜ ତଳକୁ ଖସି ପଡ଼ୁଥିବା ଅବସ୍ଥାରୁ ସେ ସମ୍ଭାଳିନେଲେ । ତାଙ୍କପରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଭଗବାନ ରାମକୃଷ୍ଣ ପରମହଂସ ଦେବଙ୍କର ଆବିର୍ଭାବ ଏବଂ ସ୍ୱାମୀ ବିବେକାନନ୍ଦଙ୍କର ଆମେରିକାରେ ଧର୍ମ ପ୍ରଚାର ଓ ରାମକୃଷ୍ଣ ମିଶନ ନାମକ ଅନୁଷ୍ଠାନ ପ୍ରତିଷ୍ଠା କରି ସେବା କାର୍ଯ୍ୟ କରିବା ଇତ୍ୟାଦି ଘଟଣା ସ୍ୱତଃ ମନରେ ଜାଗିଉଠେ । ଭାରତର ମୁକ୍ତିସଂଗ୍ରାମ ଭାରତବାସୀ ପାସୋରି ପକାଇଥିଲେ ବୋଲି କେହି କହିପାରିବ ନାହିଁ । ସବୁବିଷୟରେ ଭାରତ ଦୁର୍ବଳ ହୋଇଛି, କିନ୍ତୁ ଆତ୍ମଶକ୍ତି ହରାଇନାହିଁ । କୌଣସି ବାଟ ନ ପାଇ-ବାରୁ ଅନ୍ଧାରରେ ଧନ୍ଦାଳି ହୋଇ ନିଜକୁ ବିଶ୍ୱାସ କରୁ ନ ଥିଲା । ଅର୍ଥାତ ଆତ୍ମ-ବିଶ୍ୱାସ ହରାଇ ବସିଥିଲା । କିନ୍ତୁ ଧର୍ମ ଓ ସାମାଜିକ ଜୀବନ ଉପରେ ଆଘାତ ପଡ଼ିବାରୁ ଭାରତ ପୁଣି ଜାଗି ଉଠିଲା ।

ଦେଶରେ ଅନେକ ରାଜା ମହାରାଜା ରାଜ୍ୟ ହରାଇଥିବାରୁ ସେମାନଙ୍କ ମନରେ ରାଜନୈତିକ ଅସନ୍ତୋଷ ତୀବ୍ର ଆକାର ଧାରଣ କରୁଥିଲା । ବିଦେଶୀ ଓ ବିଧର୍ମୀ ସରକାର ଭାରତର ଧର୍ମ ନଷ୍ଟ କରୁଛି ବୋଲି ସର୍ବସାଧାରଣଙ୍କ ମନରେ ବିଶ୍ୱାସ ଦୃଢ଼ ହେବାକୁ ଲାଗିଲା । ଏହିପରି ରାଜନୈତିକ ଓ ଧାର୍ମିକ କାରଣରୁ ୧୯୫୭ ମସିହାରେ ଭାରତବାସୀ କମ୍ପାନୀ ସରକାର ବିରୁଦ୍ଧରେ ରକ୍ତାକ୍ତ ସଂଗ୍ରାମ କରିଥିଲେ । ଏହାକୁ ଇଂରେଜ ସରକାର ସିପାହୀବିଦ୍ରୋହ ବୋଲି ପ୍ରମାଣ କରିଛନ୍ତି, କିନ୍ତୁ ମୁକ୍ତିସଂଗ୍ରାମ ବୋଲି ସ୍ୱୀକାର କରି ନାହାନ୍ତି, କାରଣ ମୁକ୍ତି ସଂଗ୍ରାମ କହିଲେ ସେମାନଙ୍କ ଜାତି ତଥା ଦେଶର ଆତ୍ମସମ୍ମାନ ଉପରେ କଳଙ୍କ ଲାଗିବ । ତରବାରି ବଳରେ ଭାରତର ଶାସନ ଅଧିକାର ସେମାନଙ୍କ ହସ୍ତଗତ ହୋଇଛି, କିମ୍ବା ତରବାରି ବଳରେ ସେମାନେ ଭାରତ ଶାସନ କରୁଛନ୍ତି ଏହା ଜଣାପଡ଼ିଲେ ଅତ୍ୟାଗୃହୀ ବୋଲି ପ୍ରମାଣିତ ହୋଇପଡ଼ିବ । ତେଣୁ ସେମାନଙ୍କ ଲେଖାରୁ ୧୮୫୭ ମସିହା ମୁକ୍ତି ସଂଗ୍ରାମକୁ ଆମ୍ଭେମାନେ ସିପାହୀବିଦ୍ରୋହ ବୋଲି ଜାଣିଛୁ । ପ୍ରକୃତରେ ତାହା ଭାରତର ରକ୍ତାକ୍ତ ମୁକ୍ତି ସଂଗ୍ରାମ । କିନ୍ତୁ ଏହି ସଂଗ୍ରାମ ଯେଉଁମାନେ ସୃଷ୍ଟି କଲେ ସେମାନଙ୍କ ଲକ୍ଷ୍ୟ ଅସ୍ପଷ୍ଟ ଥିଲା । ସଂଗ୍ରାମର ପରିଚାଳନା ଯେପରି ହେବାର ସେପରି ହୋଇପାରିଲା ନାହିଁ । ତେଣୁ ମୁକ୍ତି ସଂଗ୍ରାମରେ ଭାରତ ଅତି ଶୋଚନୀୟ ଭାବରେ ପରାସ୍ତ ହୋଇଥିଲା । ଏହି ମୁକ୍ତି ସଂଗ୍ରାମକୁ ଦମନ କରିବାରେ ଏପରି ନିର୍ମମ ଓ ନିଷ୍ଠୁର ଦମନ ଲୀଳା ଓ ନୃଶଂସ ହତ୍ୟାକାଣ୍ଡ ସୃଷ୍ଟି କରାଗଲା, ଯହିଁରେ ଭାରତବାସୀ ନିଜକୁ ସମ୍ବଳହୀନ ବୋଲି ଭାବିବାରେ ଅନ୍ତ ରହିଲା ନାହିଁ । ଇଚ୍ଛାକଲେ ଇଂରେଜ ସରକାରକୁ ତଡ଼ିଦେଇ ହେବ । ଏହିପରି ଆତ୍ମବିଶ୍ୱାସ ମଧ୍ୟ ଦେଶରୁ ଲୋପ ପାଇଲା ।

କିନ୍ତୁ ସବୁଦିନ ପାଇଁ ସବୁକଥା ସମାନ ରହେ ନାହିଁ । ଏହା ହେଉଛି ପ୍ରକୃତିର ନିୟମ । ସୁତରାଂ ସବୁଦିନ ପାଇଁ ଉପୂଖିତ ହୋଇ ଭାରତବାସୀ ପଡ଼ିରହିବ, ଏହା ସମ୍ଭବପର ନୁହେଁ । ପରିସ୍ଥିତିରେ ନିଶ୍ଚୟ ପରିବର୍ତ୍ତନ ଘଟିବ । ଭାରତର କୋଟି କୋଟି ନରନାରୀଙ୍କୁ ସବୁଦିନ ପାଇଁ ଉପୂଖିତ କରାଇ ରଖିବାକୁ କଳ୍ପନା କରିବା ନିର୍ବୋଧତାର ପରିଚୟ ଦେବା । କୌଣସି ପ୍ରକାର ମୁକ୍ତି ସଂଗ୍ରାମ ଆରମ୍ଭ କରିବାର ଭାବନା ଅବଶ୍ୟ କିଛି ସମୟ ପାଇଁ ଆତ୍ମ-ପ୍ରକାଶ କରି ପାରିନାହିଁ । କିନ୍ତୁ ଏହି ସଂଗ୍ରାମ ପରେ ଭାରତର ଶାସନ ପରିଚାଳନା ଅଧିକାର ଇଷ୍ଟ ଇଣ୍ଡିଆ କମ୍ପାନୀ ହାତରୁ ବ୍ରିଟିଶ ପାର୍ଲିୟାମେଣ୍ଟ ହାତକୁ ଗଲା । ମହାରାଣୀ ଭିକ୍ଟୋରିଆ ନିଜକୁ ଭାରତର ସର୍ବଶ୍ରେଷ୍ଠ ଶାସନ କର୍ତ୍ତା ବୋଲି ଘୋଷଣା କଲେ । ଇଂଲଣ୍ଡ ଓ ଭାରତର ପ୍ରଜାଙ୍କୁ ସମଦୃଷ୍ଟିରେ ଦେଖି ଶାସନ ପରିଚାଳନା କରାଯିବ ବୋଲି ଦୃଢ଼ ବଚନ ଶୁଣାଇଲେ ।

## କଂଗ୍ରେସର ଜନ୍ମ

ଦେଶର ବହୁଲୋକଙ୍କ ହୃଦୟରେ ନିଜର ଦେଶ ଓ ଧର୍ମପାଇଁ ମମତା ରହିଥିବାରୁ ମୁକ୍ତି ସଂଗ୍ରାମ ସମ୍ଭବପର ହୋଇଥିଲା । ଦେଶପ୍ରତି ଆଗ୍ରହ ଜାଗ୍ରତ ରଖିବାକୁ ଦେଶର ସୁବିଧା ଅସୁବିଧା ଦୂର କରିବା ପାଇଁ କିଛି କାମ କରିବା ଦରକାର । ଏହି ଉଦ୍ଦେଶ୍ୟରେ କଲିକତା, ବମ୍ବେଇରେ ବ୍ରିଟିଶ୍ ଇଣ୍ଡିୟାନ୍ ଆସୋସିଏସନ ଗଢ଼ା ହୋଇଥିଲା । ମାନ୍ଦ୍ରାସରେ ମହାଜନ ସଭା ଏବଂ ପୁନାରେ ସାର୍ବଜନୀକ ସଭା ନାମକ ଅନୁଷ୍ଠାନସବୁ ଗଢ଼ାଗଲା । ୧୮୫୭ ମସିହାର ସଂଗ୍ରାମରେ ଯେଉଁସବୁ କ୍ଷେତ୍ରରେ ଭୀଷଣ ସଂଗ୍ରାମ ହୋଇଥିଲା କିମ୍ବା ଯେଉଁଠାରେ କେତେ ବିଶିଷ୍ଟ ଯୋଦ୍ଧା ପ୍ରାଣତ୍ୟାଗ କରିଥିଲେ, ସେସବୁ ସ୍ଥାନକୁ ପୁଣ୍ୟକ୍ଷେତ୍ର

ଅନେକରେ ଜନସାଧାରଣ ସମ୍ମାନ ପ୍ରଦର୍ଶନ କରିବାକୁ ଆରମ୍ଭ କଲେ । ଇଂରେଜମାନେ ଯାହାକୁ ସିପାହୀ ବିଦ୍ରୋହ କହିଛନ୍ତି, ସେହି ବିଦ୍ରୋହ ସେମାନଙ୍କ ଆସନକୁ ଟଳମଳ କରିଦେଇ ମହା ଆତଙ୍କ ଜାତ କରାଇଥିଲା । କୌଣସି ପ୍ରକାରେ ସେଥିରୁ ସେମାନେ ଉଦ୍ଧାରପାଇଁ ଭାରତବାସୀଙ୍କୁ ଡରାଇ ଦେବାକୁ ଅକଥନୀୟ ହିଂସାର ତାଣ୍ଡବଲୀଳା ସୃଷ୍ଟି କରିଛନ୍ତି । ତାହା ଭାରତବାସୀ ଭୁଲି ଯିବେ ବୋଲି ସେମାନଙ୍କ ମନର ବିଶ୍ୱାସ ଥାଣ ନୁହେଁ । ଭାରତ-ବାସୀର ମନରେ କଣ ଅଛି ତାହା ଜାଣିବା ଦରକାର । କୋଟି କୋଟି ନରନାରୀଙ୍କ ମନ ଜାଣିବା ପାଇଁ କିଛି ଉପାୟ ତଥା ବାଟ ବାହାର କରିବାକୁ ହେବ । ଜନସାଧାରଣଙ୍କ ମନରେ ଯେଉଁ ନିଆଁ କୁହୁଳୁଛି, ତାହା ବାହାରିଯିବାକୁ ବାଟ ନ ପାଇଲେ ତାହା କୁହୁଳି କୁହୁଳି ଦିନେ ଧପକରି ଜଳି ଉଠିବ । ଏହି ଅଗ୍ନି ଜଳି ଉଠିଲେ, ତହିଁରେ ପୋଡ଼ିଯାଇ ପାଉଁଶ ନ ହେଲେ ମଧ୍ୟ ତାହା ଲିଭାଇବା କଠିନସାଧ୍ୟ ହୋଇ ପଡ଼ିବ । ଇଂରେଜ କର୍ତ୍ତାମାନଙ୍କ ମଧ୍ୟରୁ କେତେଜଣ ଉଚ୍ଚକର୍ମଚାରୀମାନଙ୍କ ମନରେ ଏହିପରି ଭୟ ରହିଛି ବୋଲି ଅନୁମାନ କରିବା ଅଯଥା ନୁହେଁ । କାରଣ ହ୍ୟୁମ୍ ନାମକ ଜଣେ ଇଂରେଜ ବ୍ୟକ୍ତି ଭାରତର ବଡ଼ଲାଟ ଲର୍ଡ଼ ଡଫରିନ୍‌ଙ୍କ ପରାମର୍ଶର ଇଙ୍ଗିତରେ ଭାରତର ଜାତୀୟ କଂଗ୍ରେସର ମୂଳଭିତ୍ତି ସ୍ଥାପନ କରିଥିଲେ । ୧୮୮୫ ମସିହା ଡିସେମ୍ବର ମାସର ବଡ଼ଦିନ ଛୁଟି ସମୟରେ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେଇ ସହରରେ ବସିଥିଲା । କଂଗ୍ରେସର ଲକ୍ଷ୍ୟଥିଲା, ଦେଶବାସୀଙ୍କ ସୁବିଧା ଅସୁବିଧା କଥା ସରକାରଙ୍କୁ ଜଣାଇ ତହିଁର ପ୍ରତିକାର ସାଧନ କରିବା ଏବଂ ଭାରତବାସୀଙ୍କୁ ଉଚ୍ଚ ଉଚ୍ଚ ଚାକିରୀ ଦେବାପାଇଁ ଦାବୀ କରିବା । କ୍ରମଶଃ କଂଗ୍ରେସର ମୌଳିକ କର୍ମତନ୍ତ୍ରରେ ପରିବର୍ତ୍ତନ ଘଟି ଭାରତର ଭାଗ୍ୟ

ଗଠନର ଦାୟିତ୍ୱ ହାସଲ କରିବାକୁ କଂଗ୍ରେସ ଦାବୀ କରିଛି । ଶେଷରେ ନିଜର ଆତ୍ମବଳରେ ସଂଗ୍ରାମ କରି ଭାରତରୁ ଇଂରେଜ ଶାସନର ଅବସାନ ଘଟାଇବାକୁ କଂଗ୍ରେସ ସମର୍ଥ ହୋଇପାରିଛି ।

କଂଗ୍ରେସ ଅନୁଷ୍ଠାନ ପ୍ରଥମରୁ ଦେଶରେ ବିଦ୍ରୋହ ଭାବ ସୃଷ୍ଟି କରି ନ ଥିଲା । ଇଂରେଜସରକାର ବିରୁଦ୍ଧରେ ବିଦ୍ରୋହଭାବ ସୃଷ୍ଟି କରିବାକୁ ଆହୁରି ଅନେକ କାର୍ଯ୍ୟ ହୋଇଛି । ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ସମସ୍ତ ଭାରତବାସୀଙ୍କ ମନରେ ସ୍ୱାଧୀନତା ପ୍ରାପ୍ତି କରିବା ପାଇଁ ଆଗ୍ରହ ଜନ୍ମାଇ ପାରିଥିଲା ।

ବଙ୍ଗ, ମହାରାଷ୍ଟ୍ର ଓ ପଞ୍ଜାବରେ ଦେଶକୁ ସ୍ୱାଧୀନ କରିବାପାଇଁ ରାଜନୈତିକ ଷଡ଼ଯନ୍ତ୍ର କରାଯାଇଛି । ଏହି ଷଡ଼ଯନ୍ତ୍ର ଧରାପଡ଼ି କେତେ ଯୁବକ ଯାବତଜୀବନ କାରାଦଣ୍ଡ ଭୋଗିଛନ୍ତି ଏବଂ ଫାଶୀକାଠରେ ଝୁଲି ପ୍ରାଣଦାନ କରିଛନ୍ତି । ଦଳଦଳ ହୋଇ ଦେଶର ଶିକ୍ଷିତ ଯୁବକ ବିପ୍ଳବ ସୃଷ୍ଟିକରିବା ଉଦ୍ଦେଶ୍ୟରେ ବିପ୍ଳବୀଦଳ ସଂଗଠନ କରିଛନ୍ତି । ଏହିସବୁର କାହାଣୀ ଓ କରୁଣଚିତ୍ର ଆଖି ଆଗରେ ଝଲକି ଉଠୁଛି ଏବଂ ଅଙ୍ଗେ ନିଭାଇବା ଘଟଣା ମନରେ ଅପୂର୍ବ ଆନନ୍ଦ ଦେଉଛି । ବିଦେଶୀଶାସନର ଚାପରେ ଭାରତର ପ୍ରାଣ ଦବି ଯାଇନାହିଁ । ବରଂ ଅଧିକ ଟାଣ ହୋଇଛି । ଭାରତ ବିଭବ କେବଳ ଅକଳମୀଯ଼ ଥିଲା । ଏହା ଗୋଟିଏ ବିରାଟ ଦେଶ, ଏହାର ପ୍ରାଣ ବିରାଟ—ଏହାର ଅନ୍ତର୍ନିହିତ ଶକ୍ତି ଅତି ମହାନ୍ । ଏହି ଶକ୍ତି ଭାରତର ପ୍ରତ୍ୟେକ ନରନାରୀଙ୍କ ହୃଦୟ ଭିତରେ ଥିବାରୁ ତାହା ଆମକୁ ବଞ୍ଚାଇ ପାରିଛି । ଆମକୁ ଏକାଠି ବାନ୍ଧି ରଖିଛି । ଅସୀମ ଦୁଃଖ ଦୁର୍ଦ୍ଦଶା ଭିତରେ ଭାରତବାସୀ ନିଜକୁ ଭୁଲିଯାଇନାହିଁ । କେତେ ପୁରୁଣା ଦେଶ ଓ ସଭ୍ୟତା ପୃଥିବୀବକ୍ଷରୁ ଲୋପ ପାଇଛି, କିନ୍ତୁ ଆମ୍ଭ ଦେଶ ଓ

ଆମ୍ଭର ସଭ୍ୟତା ଲୋପ ପାଇନାହିଁ । ଏଣୁ ଯଦି ଦେଶବାସୀ ଯାହା ସ୍ମରଣ କରି ପାରିବେ, ତେବେ ଦେଶକୁ ନୂତନ କରି ଗଢ଼ିବା କଠିନ ହେବ ନାହିଁ ।

ଭାରତର ସଂପଦରେ ଇଂରେଜ ଜାତି ପୃଥିବୀରେ ଅତି ପ୍ରତାପଶାଳୀ ହୋଇ ଉଠିଲେ । ଭାରତକୁ ଚିରଦିନ ତାଙ୍କ ହାତ-ମୁଠାରେ ରଖିବାକୁ ନାନା ପ୍ରକାର ଖେଳ ଖେଳିବାକୁ ଆରମ୍ଭ କଲେ । ଭାରତବାସୀଙ୍କୁ ଶାସନ ଅଧିକାର ଦେବାକୁ ଯେତେ ପ୍ରକାର ଆପତ୍ତି ଅଭିଯୋଗ କରାଗଲା, କଂଗ୍ରେସର କୌଣସି କଥାପ୍ରତି କର୍ଣ୍ଣପାତ କଲେ ନାହିଁ । ୧୯୧୪ ମସିହାରେ ପ୍ରଥମ ଜର୍ମାନ ଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧ ଚାରିବର୍ଷ କାଳ ଲାଗିରହିଲା । ସେଥିରେ ଇଂରେଜଙ୍କ ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଲା, ଇଂରେଜ ସରକାର ଭାରତବାସୀଙ୍କ ଦ୍ୱାରସ୍ଥ ହୋଇ ସାହାଯ୍ୟ ପ୍ରାର୍ଥନା କରିଥିଲେ । ଭାରତବାସୀଙ୍କଠାରୁ ଆନ୍ତରିକ ସାହାଯ୍ୟ ପାଇବା ଆଶାରେ ଭାରତରେ ସେମାନଙ୍କ ଶାସନର ଲକ୍ଷ୍ୟ କ୍ରମୋନ୍ନତି ଭାବରେ ଔପନିବେଶିକ ସ୍ୱାୟତ୍ତ ଶାସନ ଗଠନ ବୋଲି ଘୋଷଣା କଲେ, ଏହି ଘୋଷଣା ଭାରତରେ ସମସ୍ତଙ୍କୁ ସନ୍ତୁଷ୍ଟ କରି ନ ଥିଲା । କିନ୍ତୁ ବିପଦବେଳେ ସାହାଯ୍ୟପ୍ରାର୍ଥୀ ହେଲେ କୌଣସି କଥାକୁ ବିଚାର ନ କରି ସାହାଯ୍ୟ ପ୍ରଦାନ କରିବା ଉଚିତ ବୋଲି ମହାତ୍ମା ଗାନ୍ଧୀ ଦେଶବାସୀଙ୍କୁ ଉପଦେଶ ଦେଇଥିଲେ । ଇଂରେଜମାନେ ଭାରତର ଅଜସ୍ର ଧନ ଓ ଜନ ବଳ ପାଇ ଜର୍ମାନ ଯୁଦ୍ଧରେ ଜୟଲାଭ କଲେ । ଜୟଲାଭ କଲାପରେ ତାଙ୍କର ପ୍ରତିଶ୍ରୁତି ମନରୁ ପାସୋରି ଗଲା ପରି ଜଣାଗଲା । ଫଳରେ ଦେଶରେ ହୋମ୍‌ରୁଲ ଅର୍ଥାତ୍ ସ୍ୱାୟତ୍ତ ଶାସନ ପାଇଁ ଆନ୍ଦୋଳନ ଆରମ୍ଭ କରାଗଲା ।

ଇଂରେଜ ସରକାରଙ୍କୁ ଏପରି ଆନ୍ଦୋଳନ ସୁଖ ଲାଗିଲା ନାହିଁ । ଭାରତବାସୀ ଭବିଷ୍ୟରେ କୌଣସି ଆନ୍ଦୋଳନ କରିପାରିବେ ନାହିଁ, ଏହିପରି ମତଲବରେ ଇଂରେଜ ସରକାର ଗୋଟିଏ ଆଇନ ଜାରି କରିବାକୁ ଉଦ୍ୟତ ହେଲେ । ଏହି ଆଇନର ନାମ ରଲେଟ ଆଇନ ।

## ରଲେଟ ସତ୍ୟାଗ୍ରହ

ଏହି ରଲେଟ ଆଇନ ବିରୁଦ୍ଧରେ ଭାରତର ଜନମତ ପ୍ରବଳ ଆକାର ଧାରଣ କଲା । ସରକାର ଭାରତର କୌଣସି କଥାକୁ କର୍ଣ୍ଣପାତ ନ କରି ରଲେଟ ଆଇନକୁ ଜାରି କରିବାକୁ ଦୃଢ଼ ମତ ପ୍ରକାଶ କଲେ । 'ଏ ରଲେଟ ଆଇନ ଭଳି ଗୋଟିଏ କଠୋର ଆଇନ ଭାରତରେ ଜାରି କରାଗଲେ ଭାରତବାସୀର ଆତ୍ମମର୍ଯ୍ୟାଦା କ୍ଷୁଣ୍ଣ ହେବ', ଏହି କଥା ଗାନ୍ଧିଜୀ ଶୁଣାଇଲେ ଏବଂ ଏପରି ଆଇନ ଗ୍ରହଣ ନ କରିବାକୁ ବଡ଼ଲାଟ ଲର୍ଡ଼ ଚେମସ୍‌ଫୋର୍ଡ଼ ସାହେବଙ୍କୁ ପରାମର୍ଶ ଦେଇ ଖଣ୍ଡିଏ ପତ୍ର ଲେଖିଥିଲେ । ଉକ୍ତ ପତ୍ରରେ ମହାତ୍ମା ଗାନ୍ଧୀ ଲେଖିଥିଲେ, ଭାରତର ଜନମତ ବିରୁଦ୍ଧରେ ଇଂରେଜ ସରକାର ଯଦି ଏହି ଆଇନକୁ ଗ୍ରହଣ କରନ୍ତି, ତେବେ ତାଙ୍କୁ ବାହାରେଇ ଏ ଦେଶରୁ ତଡ଼ିଦେବା ଦେଶବାସୀଙ୍କ କର୍ତ୍ତବ୍ୟ ହୋଇପଡ଼ିବ । କିନ୍ତୁ ସେ ଅହିଂସାବାଦୀ ହୋଇଥିବାରୁ ହିଂସାର ବାଟ କଳ୍ପନା ନ କରି ଦେଶରେ ଆଇନ ଅମାନ୍ୟ କରିବାକୁ ଦେଶବାସୀଙ୍କୁ ପରାମର୍ଶ ଦେବେ, ଏପରି ଧମକପୂର୍ଣ୍ଣ ପତ୍ର ପାଇବାକୁ ବଡ଼ଲାଟ ସାହେବ କଳ୍ପନା କରି ନ ଥିଲେ । සුତରାଂ କଥାବାର୍ତ୍ତା କରିବାକୁ ବଡ଼ଲାଟ ସାହେବ ଦିଲ୍ଲୀକୁ ଯିବାପାଇଁ ଗାନ୍ଧିଜୀଙ୍କୁ ଡକାଇ ପଠାଇଲେ । ବଡ଼ଲାଟ ସାହେବଙ୍କଠାରୁ ଡକରା ପାଇ

ଗାନ୍ଧିଜୀ ଦିଲ୍ଲୀରେ ଉପସ୍ଥିତ ହୋଇଥିଲେ । ବଡ଼ଲାଟ ଲର୍ଡ଼ ଚେମ୍ସ୍‌ଫୋର୍ଡ଼ ସାହେବଙ୍କ ସହିତ ତାଙ୍କର ବିସ୍ତୃତ ଆଲୋଚନା ପଡ଼ିଲା । କେହି କାହାରିକୁ ବୁଝାଇ ପାରି ନ ଥିଲେ । ଶେଷରେ ବଡ଼ଲାଟ ଗାନ୍ଧିଜୀଙ୍କୁ କହିଥିଲେ, "ଗାନ୍ଧି ! ତୁମେ ଏତେ ଟାଣରେ କଥା କହୁଛ—ତୁମେ ଜଣେ ବ୍ୟକ୍ତି । ତୁମେ କଣ ବିଚାରୁଛ ଏ ଦେଶରୁ ଇଂରେଜ ସରକାରଙ୍କୁ ତୁମେ ଏକାକୀ ତଡ଼ିଦେଇ ପାରିବ । ତୁମ୍ଭଙ୍କୁ ମୁଁ ଜଣେ ବିଚାରବାନ ପୁରୁଷ ବୋଲି ବିଶ୍ୱାସ କରିଥିଲି । କିନ୍ତୁ ଦେଖୁଛି ତୁମ୍ଭର ବିଚାର ବଡ଼ ପ୍ରମାଦପୂର୍ଣ୍ଣ । ତୁମ୍ଭଦ୍ୱାରା କୌଣସି କାର୍ଯ୍ୟ ହୋଇପାରିବ ନାହିଁ ।" ଏହାର ଉତ୍ତରରେ ଗାନ୍ଧୀଜୀ କହିଥିଲେ, "ଆଜ୍ଞା ଆପଣ ମତେ ଯେପରି ବିଚାରୁଛନ୍ତି ତାହା ଆପଣଙ୍କ ବିଚାରରେ ଯଥାର୍ଥ ହୋଇପାରେ । କିନ୍ତୁ ମୁଁ ନିଜକୁ ସେପରି ବିଚାର କରେ ନାହିଁ । ପୃଥିବୀରେ ଯଥାର୍ଥ ବିଚାର କରିପାରିବାର ବ୍ୟକ୍ତି ଯଦି କେହି ଥାନ୍ତି, ତେବେ ମୁଁ ନିଶ୍ଚୟ ସେଥିରୁ ଜଣେ । ଆଜି ମୁଁ ଏକା ଜଣେ କଣ କରିପାରେ ଏପରି କଥା ନ କହିଥିଲେ ଭଲ ହୋଇଥାନ୍ତା । ଆପଣ ଜାଣି ରଖନ୍ତୁ ଜଣେ ବ୍ୟକ୍ତିର ନୈତିକ ବଳ ଗୋଟିଏ ପରମ ପରାକ୍ରମୀ ସାମ୍ରାଜ୍ୟର ମୂଳ ଭିତ୍ତିକୁ ଦୋହଲେଇ ଦେବାର ଶକ୍ତି ସଂଗ୍ରହ କରିପାରେ ।" ଏପରି କଥୋପକଥନ କରି ଗାନ୍ଧିଜୀ ଦିଲ୍ଲୀରୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

## ଇଂରେଜ ସରକାରଙ୍କ ଦମନଲୀଳା

ବିଶ୍ୱର ପ୍ରଥମ ମହାସମରରେ ଜୟଲାଭ କରି ବ୍ରିଟିଶ ସରକାର ପୃଥିବୀରେ ଅଜେୟ ଓ ଅଦ୍ୱିତୀୟ ବୋଲି ନିଜକୁ ମନେ କରୁଛନ୍ତି । ନିରସ୍ତ୍ର ଭାରତବାସୀ ତାଙ୍କର କଣ କରିପାରିବ ।

ଯେଉଁ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଏ ନାହିଁ, ସେହି ସାମ୍ରାଜ୍ୟବାଦୀ ଇଂରେଜ ସରକାର ଭାରତ-ଜନମତକୁ ଭ୍ରୂକ୍ଷେପ ନ କରି ଉକ୍ତ ରଓଲଟ ଆଇନକୁ ଗ୍ରହଣ କରିଥିଲେ । ୧୯୧୯ ମସିହା ମାର୍ଚ୍ଚମାସ ତା ୨୮ରିଖ ଦିନ ରାତି ୯ଟା ପର୍ଯ୍ୟନ୍ତ ବଡ଼ଲାଟ ସାହେବ ତାଙ୍କ ସଭାକାର୍ଯ୍ୟ ଚଳାଇ ରଓଲଟ ଆଇନକୁ ଗ୍ରହଣକଲେ । ଏହି ଆଇନ ବିରୁଦ୍ଧରେ ଅହିଂସାପୂର୍ଣ୍ଣ ସତ୍ୟାଗ୍ରହ ସଂଗ୍ରାମ କରିବାକୁ ଦେଶ-ବାସୀଙ୍କୁ ମହାତ୍ମାଗାନ୍ଧୀ ଆହ୍ୱାନ ଦେଲେ । ଏହି ଆହ୍ୱାନ ଭାରତର ପୁରପଲ୍ଲୀରେ ପ୍ରବେଶ କରି ଅସଂଖ୍ୟ ନରନାରୀଙ୍କ ହୃଦୟରେ ପ୍ରତିଧ୍ୱନିତ ହେଲା । ଆତ୍ମବିଶ୍ୱାସ ହରାଇ ଭାଗ୍ୟକୁ ଆଦରି ମୃତପ୍ରାୟ ପଡ଼ିରହିଥିବା ଭାରତବାସୀ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଏକ ନୂତନ ଜୀବନ ଲାଭ କରିଥିଲେ । ୧୯୧୯ ମସିହା ଅପ୍ରେଲ ୬ ତାରିଖ ଦିନ, ରଓଲଟ ଆଇନ୍ ବିରୁଦ୍ଧରେ ସତ୍ୟାଗ୍ରହ ସଂଗ୍ରାମ ଘୋଷଣା କରାଗଲା । ଜଣେ ବ୍ୟକ୍ତିର ଆହ୍ୱାନରେ ଭାରତର ହିନ୍ଦୁ ମୁସଲମାନ ପ୍ରଜା ଇଂରେଜ ସରକାରଙ୍କ ବିରୁଦ୍ଧରେ ଏପରି ଜାଗି ଉଠିବେ, ଏହା ସରକାରଙ୍କ କଳ୍ପନାର ବହିର୍ଭୂତ ଘଟଣା । ଇଂରେଜ ସରକାର ଚମକି ଉଠିଲା ପରି ବୋଧ ହେଲା । ଭାରତର ଏପରି ନବ ଜାଗ୍ରତ ଜୀବନକୁ ସମୂଳେ ଉତ୍ପାଟନ କରିବାକୁ ଦୃଢ଼ ସଂକଳ୍ପ କରିଥିଲେ । ପଞ୍ଜାବର ଅମୃତସର ସହରରେ ଜାଲିଆନା ବାଗରେ ନୃଶଂସ ହତ୍ୟାକାଣ୍ଡ ସୃଷ୍ଟିକରି ଅସଂଖ୍ୟ ଲୋକଙ୍କୁ ଗୁଳିକରି ମାରିଦିଆ ଗଲା । ସାରା ପଞ୍ଜାବରେ ସାମରିକ ଆଇନ ଜାରି କରି ଏପରି ନିର୍ମମ ଓ ନିଷ୍ଠୁର ଦମନଲୀଳା କରାଗଲା, ଯଦ୍ଦ୍ୱାରା ସମଗ୍ର ଭାରତ ଭୟରେ ଥରି ଉଠିଲା ପ୍ରାୟ ଜଣାଗଲା । ଏହି ସଂଗ୍ରାମରେ ମୁଁ ଯୋଗ ଦେଇଛି ଏବଂ ପଞ୍ଜାବ ଅତ୍ୟାଚାରର ଦୃଶ୍ୟ ସ୍ୱଚକ୍ଷୁରେ ଦେଖିଛି । ତାହା ମନେପଡ଼ିଗଲେ ମୋର ଶରୀର ଥରି ଉଠେ

ଏବଂ ହୃଦୟରେ ଅପୂର୍ବ ଆନନ୍ଦ ଅନୁଭବ କରେ । ସେହି ସବୁର ସବିଶେଷ ଘଟଣାବଳୀ ଏଠାରେ ଉଲ୍ଲେଖ କରିବା ଆବଶ୍ୟକ ବୋଧ କରୁନାହିଁ ।

## ଭାରତର ଅହିଂସା ସଂଗ୍ରାମ

ଭାରତବାସୀଙ୍କୁ ଭୟଭୀତ କରିବାକୁ ପଞ୍ଜାବରେ ଅକଥନୀୟ ଅତ୍ୟାଚାର କରାଗଲା ସତ୍ୟ, କିନ୍ତୁ ତଦ୍ଦ୍ୱାରା ଇଂରେଜ ସରକାରଙ୍କର ଉଦ୍ଦେଶ୍ୟ ସାଧିତ ହୋଇପାରିଲା ନାହିଁ । ଯୁଦ୍ଧରେ ଜୟଲାଭ କରି ଇଂରେଜ ଶାସକମାନେ ଗର୍ବ ଓ ଅହଂକାରରେ ଅନ୍ଧ ବନିଯାଇଥିଲେ । ସେମାନେ 'ପ୍ରକୃତିର ପରିବର୍ତ୍ତନ ଘଟେ', ଏହା ବୁଝିପାରିଲେ ନାହିଁ । ପଞ୍ଜାବ ଅତ୍ୟାଚାର ଇଂରେଜ ସରକାରଙ୍କର ସ୍ୱରୂପକୁ ଚିହ୍ନାଇ ଦେଲା । ଇଂରେଜଙ୍କ ହାତରୁ ଶାସନ ଅଧିକାର ଛଡ଼ାଇ ନ ନେଲେ ଭାରତର ଉନ୍ନତି କଳ୍ପନା କରିବା ଅସମ୍ଭବ । ଏହି ସତ୍ୟ ଦେଶରେ ବହୁଲୋକ ଉପଲବ୍ଧି କରିବାକୁ ଲାଗିଲେ । କିନ୍ତୁ ଦେଶକୁ ଉଦ୍ଧାର କରିବାର ବାଟ କାହାରିକୁ ଦେଖାଗଲା ନାହିଁ । ଏହି ବାଟ ବାହାର କରିବାକୁ ୧୯୨୦ ମସିହା ସେପ୍ଟେମ୍ବର ମାସରେ କଲିକତାରେ କଂଗ୍ରେସର ଗୋଟିଏ ବିଶେଷ ବୈଠକ ବସିଲା । ଏହି କଂଗ୍ରେସରେ ମହାତ୍ମାଗାନ୍ଧୀ ଦେଶବାସୀଙ୍କୁ ଅସହଯୋଗର ବାର୍ତ୍ତା ଶୁଣାଇଥିଲେ । ମହାତ୍ମାଗାନ୍ଧୀଙ୍କର ନେତୃତ୍ୱରେ ଭାରତରେ ସତ୍ୟାଗ୍ରହ ସଂଗ୍ରାମ ଆରମ୍ଭ କରାଯାଇଥିଲା । ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ହୋଇଥିଲା । କିନ୍ତୁ ଦେଶରେ ହିଂସାପୂର୍ଣ୍ଣ କାର୍ଯ୍ୟ ଦେଖି ମହାତ୍ମାଗାନ୍ଧୀ ସେହି ଆନ୍ଦୋଳନକୁ ବନ୍ଦ କରିଦେଲେ । ୧୯୩୦ ମସିହାରେ ପୁଣି ଲବଣ ସତ୍ୟାଗ୍ରହ ଆରମ୍ଭ କରାଗଲା । ଏହି ଲବଣ ସତ୍ୟାଗ୍ରହକୁ ଦମନ କରିବାକୁ କଠୋର ଦମନନୀତି

ଗ୍ରହଣ କରି ଇଂରେଜ ସରକାର ଥକାପଡ଼ିଲେ । ଶେଷରେ କଂଗ୍ରେସ ସହିତ ସନ୍ଧି କରି ଏକ ଚୁକ୍ତିପତ୍ର ସ୍ୱାକ୍ଷରିତ ହେଲା । ଭାରତର ବଡ଼ଲାଟ ଲର୍ଡ଼ ଇରୱିନ ସାହେବ ଏହି ଚୁକ୍ତି କରିଥିବାରୁ ଏହା ଗାନ୍ଧୀ-ଇରୱିନ୍ ଚୁକ୍ତି ନାମରେ ବିଦିତ । ଏହା ପରେ ଭାରତବାସୀଙ୍କ ହାତକୁ କିଛି ଶାସନ ଅଧିକାର ଆସିଲା ସତ୍ୟ, କିନ୍ତୁ ପୂର୍ଣ୍ଣ ଅଧିକାର ଆସିଲା ନାହିଁ । ଭାରତ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରି ସଂଗ୍ରାମ ଆରମ୍ଭ କରିଥିଲା । ଏହି ସଂଗ୍ରାମରେ ଭାରତର ଜନସାଧାରଣ ଯେଉଁ ଦୁଃଖ ଯନ୍ତ୍ରଣା ଭୋଗ କରିଛନ୍ତି, ଯେ ପ୍ରକାର ଅଲୌକିକ ସାହସ ଓ ବୀରତ୍ୱର ପରିଚୟ ଦେଇଛନ୍ତି, ସେସବୁ କାହାଣୀ ଯେପରି କରୁଣ ସେହିପରି ଉନ୍ମାଦକ । ସେ ସବୁ ଉଲ୍ଲେଖ କରୁନାହିଁ । ଭାରତରୁ ଇଂରେଜ ଶାସନ ମୂଳଚ୍ଛେଦ ନ ହେଲା ପର୍ଯ୍ୟନ୍ତ ସଂଗ୍ରାମରୁ ବିରାମ ନାହିଁ ।

## ମହାତ୍ମାଜୀଙ୍କ ଭାରତ ଛାଡ଼ ଆହ୍ୱାନ

ଇତ୍ୟବସରରେ ପୁଣି ବିଶ୍ୱ ମହାସମର ଆରମ୍ଭ ହେଲା । ଏହି ଯୁଦ୍ଧରେ ଇଂରେଜ ସରକାର ବର୍ମାରେ ଜାପାନଦ୍ୱାରା ଅତି ଶୋଚନୀୟ ଭାବରେ ପରାଜିତ ହୋଇ ପଛଘୁଞ୍ଚା ଦେଲେ । ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲାବେଳେ ଭାରତୀୟ ସୈନ୍ୟଙ୍କୁ ଜାପାନ ସରକାରଙ୍କ ହାତରେ ସମର୍ପିଦେଇ ପଳାଇ ଆସିଲେ । ଯେଉଁ ଶାସନ ଅଧିକାର ଭାରତକୁ ମିଳିଥିଲା ତାହାରି ବଳରେ ପ୍ରତି ପ୍ରଦେଶରେ ଶାସନ କ୍ଷମତା ଭାରତବାସୀଙ୍କ ହାତରେ ଥିଲା । ଅଧିକାଂଶ ପ୍ରଦେଶରେ କଂଗ୍ରେସ ପ୍ରାଦେଶିକ ଶାସନଭାର ଗ୍ରହଣ କରିଥିଲା । କିନ୍ତୁ ଇଂରେଜ ସରକାର କଂଗ୍ରେସକୁ ନ ପଚାରି ନିଜ ଇଚ୍ଛାନୁସାରେ ଭାରତକୁ ଯୁଦ୍ଧରେ ପୂରାଇଥିଲେ । ବର୍ତ୍ତମାନ ବର୍ମାରେ ହାରି ମାନ ପଳାଇ

ଆସିବାରେ ଭାରତ ଉପରକୁ ଇଂରେଜ ସରକାର ଯୁଦ୍ଧକୁ ଡାକି ଆଣିଲାପରି ହେଲା । ଭାରତବାସୀ କହାରି ଶତ୍ରୁ ନୁହନ୍ତି । କିନ୍ତୁ ଭାରତରେ ଇଂରେଜ ସରକାରି ଜାପାନର ଶତ୍ରୁ । ଯୁଦ୍ଧ ସମୟରେ ଶାସନ ଦାୟିତ୍ୱ ଗ୍ରହଣ କରିବା, ଇଂରେଜ ସରକାରକୁ ସାହାଯ୍ୟ କରିବା ଭଲ ହେବ । ଭାରତବାସୀଙ୍କ ମତାମତ ପ୍ରତି ଭ୍ରୁକ୍ଷେପ ନ କରି ଭାରତକୁ ଇଂରେଜ ସରକାର ସେମାନଙ୍କ ନିଜ ଶତ୍ରୁର ଶତ୍ରୁ ଦେଶ କରି ଘୋଷଣା କରିଥିବାରୁ କଂଗ୍ରେସ ତାହା ସ୍ୱୀକାର ନ କରି ଶାସନ ଦାୟିତ୍ୱ ଛାଡ଼ିଥିଲା । ପୁଣି ଶାସନଭାର ଗ୍ରହଣ କରି ଯୁଦ୍ଧରେ ସାହାଯ୍ୟ କରିବାକୁ ଇଂରେଜ ସରକାର କଂଗ୍ରେସ ପଛରେ ଗୋଡ଼ାଇଲେ କହିଲେ ଚଳିବ । କିନ୍ତୁ କଂଗ୍ରେସ ଆଉ ମନ ଭୁଲାଣିଆ କଥାରେ କର୍ଣ୍ଣପାତ କଲା ନାହିଁ ।

ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କୁ ଇଂରେଜ ସରକାର ଅଟକ ବନ୍ଦୀ କରି ରଖିଥିଲେ । ସେ ସରକାରଙ୍କ ଆଖିରେ ଧୂଳି ପକାଇ ଲୁଚି ଦେଶରୁ ଖସି ପଳାଇ ଜର୍ମାନୀ ଦେଶରେ ଉପସ୍ଥିତ ହେଲେ । ଜର୍ମାନୀରୁ ଯାଇ ଜାପାନରେ ପହଞ୍ଚି ବର୍ମାରେ ସ୍ୱାଧୀନ ଭାରତ ସରକାର ଗଠନ କଲେ । ଇଂରେଜ ସରକାର ଜାପାନ ସରକାରଙ୍କ ନିକଟରେ ସମର୍ପି ଦେଇଥିବା ଭାରତୀୟ ସୈନ୍ୟବାହିନୀକୁ ସ୍ୱାଧୀନ ଭାରତ ସରକାରଙ୍କ ସୈନ୍ୟ ବିଭାଗରେ ଭର୍ତ୍ତିକରି ଭାରତରେ ଥିବା ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଏଣେ ଭାରତରେ କଂଗ୍ରେସ ମଣ୍ଡପ ଉପରେ ଦଣ୍ଡାୟମାନ ହୋଇ ମହାତ୍ମାଜୀ ଇଂରେଜ ସରକାରଙ୍କୁ ଆହ୍ୱାନ ଦେଲେ 'ଭାରତଛାଡ଼' । ଇଂରେଜ ସରକାରଙ୍କୁ ଭାରତ ଛାଡ଼ି ପଳାଇବାକୁ ଗାନ୍ଧିଜୀ ଆହ୍ୱାନ କଲେ । ସେମାନେ ରହିଲେ ଭାରତକୁ ଯୁଦ୍ଧ ମାଡ଼ିଆସିବ । ଇଂରେଜ

ସରକାର ଭାରତ ଛାଡ଼ି ପଳାଇ ନ ଗଲେ, ତାଙ୍କ ଶାସନ ଲୋପ କରିବାକୁ 'କର ଅବା ମର' ବୋଲି ଭାରତବାସୀଙ୍କୁ ମହାତ୍ମାଜୀ ଡାକଦେଲେ । ମରଣକାଳେ ବିପରୀତବୁଦ୍ଧି ପରି ଇଂରେଜ ସରକାରଙ୍କୁ ବୁଦ୍ଧି ଦେଖାଗଲା ନାହିଁ । ମହାତ୍ମାଜୀଙ୍କ ବଚନକୁ ଅଗ୍ରାହ୍ୟ କରି ତାଙ୍କୁ ଧରି ବନ୍ଦୀକରି ରଖିଲେ । ତାଙ୍କ ସହିତ ଅନ୍ୟାନ୍ୟ କଂଗ୍ରେସ ନେତା ଓ କର୍ମୀସବୁ ଧରା ହୋଇଗଲେ । ଦେଶବାସୀ ଆଉ ଡରିଗଲେ ନାହିଁ । ସମଗ୍ର ଭାରତରେ ଭୂମୂଳ କାଣ୍ଡ ଘଟିଗଲା । ଭାରତର ଅନେକ ଅଞ୍ଚଳରୁ ଇଂରେଜ ସରକାରର ଚିହ୍ନ ଲୋପ ହୋଇଗଲା । ଇଂରେଜ ସରକାର ମନେକଲେ ଭାରତକୁ ଦବାଇ ଦେଇ ଏ ଦେଶରେ ରାଜତ୍ୱକୁ ଦୃଢ଼ କରିବେ । କିନ୍ତୁ ତାହା ହୋଇ ପାରିଲା ନାହିଁ । ବହୁତ ଇଂରେଜଙ୍କ ମନ ମାନିଗଲା । ଭାରତ ଶାସନ ଆଉ ପ୍ରୀତିକର ବୋଧ ହେଲା ନାହିଁ । ସରକାରୀ କର୍ମଚାରୀଙ୍କ ମଧ୍ୟରୁ ଅନେକଙ୍କ ମନର ପରିବର୍ତ୍ତନ ଘଟିଲା । ବହୁ ଚିନ୍ତାଶୀଳ ଉଦାର ଭାବାପନ୍ନ ଇଂରେଜ ଭାରତରେ ଅଧିକ ସମୟ ଶାସନ ଚଳାଇବାକୁ ସରକାରଙ୍କୁ ସମର୍ଥନ କରି ନ ଥିଲେ । ଶେଷରେ ଇଂରେଜ ସରକାର ସ୍ୱଇଚ୍ଛାରେ ଭାରତରୁ ଅପସରି ଯିବାକୁ ଇଚ୍ଛା ପ୍ରକାଶ କଲେ । ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ମିଳିବ ।

## ଭାରତର ସ୍ୱାଧୀନତା ପ୍ରାପ୍ତି ବଡ଼ ମର୍ମନ୍ତୁଦ ଦୁଃଖ

ଇଂରେଜ ସରକାର ଭାରତକୁ ସ୍ୱାଧୀନତା ଦେଇ ଏ ଦେଶ ଛାଡ଼ିଯିବେ ସତ ; କିନ୍ତୁ ସେମାନଙ୍କ ଶାସନର ପରିଣାମ ଅତି ସାଂଘାତିକ ଆକାର ଧାରଣ କଲା । ଭାରତର ଭାଗ୍ୟଡୋରିକୁ ଚିରଦିନ ନିଜ ଅକ୍ତିଆରରେ ରଖିବାକୁ ଯେଉଁସବୁ କୂଟନୀତି ପ୍ରୟୋଗ କରିଥିଲେ, ତାହା ଭାରତର ବଳକୁ ଭାଙ୍ଗିଦେଲା । ଭାରତର

ମୁସଲମାନ ଭାଇମାନେ ହିନ୍ଦୁଙ୍କ ସହିତ ଗୋଟିଏ ଶାସନର ଅଧୀନରେ ରହିବାକୁ ରାଜି ହେଲେ ନାହିଁ । ଭାଇଭାଗ ବଣ୍ଟା ହେଲା ଭଳି, ସେମାନେ ଭାରତକୁ ଭାଗ କରି ପାକିସ୍ଥାନ ନାମକ ଗୋଟିଏ ସ୍ୱତନ୍ତ୍ର ମୁସଲମାନ ରାଜ୍ୟ ସ୍ଥାପନ କରିବାକୁ ଜିଦ ଧରି ବସିଲେ । ଇଂରେଜ ସରକାର ଭାରତକୁ ଦୁଇଭାଗ କରିବାକୁ ରାଜି ହେଲେ ନାହିଁ । ଯେତେ ଯାହା ବୁଝାଇ କହିଲେ ମଧ୍ୟ ସେମାନେ କିଛି ଶୁଣିଲେ ନାହିଁ । ଦିନକୁ ଦିନ ହିନ୍ଦୁ ମୁସଲମାନ ବିଭେଦ ଉତ୍କଟ ବିବାଦରେ ପରିଣତ ହେଲା । କୌଣସି ଉପାୟ ଦେଖା ନ ଯିବାରୁ ଶେଷରେ ଭାରତକୁ ପାକିସ୍ଥାନ ଓ ଭାରତ ଏପରି ଦୁଇଭାଗରେ ବିଭକ୍ତ କରିବାକୁ ପଡ଼ିଲା । ୧୯୪୭ ମସିହା ଅଗଷ୍ଟମାସ ଚଉଦ ତାରିଖ ରାତି ବାରଟା ପରେ ଭାରତକୁ କଂଗ୍ରେସ ହାତରେ ଏବଂ ପାକିସ୍ଥାନକୁ ମୁସଲିମ୍‌ଲିଗ୍ ହାତରେ ସମର୍ପି ଦେଇ ଇଂରେଜ ସରକାର ଏ ଦେଶରୁ ଚିର ବିଦାୟ ଗ୍ରହଣ କରିଥିଲେ । ଅଗଷ୍ଟ ପନ୍ଦର ତାରିଖରେ ସ୍ୱାଧୀନ ଭାରତ ଜନ୍ମଲାଭକଲା । ଏଣୁ ଏହି ଅଗଷ୍ଟ ପନ୍ଦର ତାରିଖକୁ ଆମ୍ଭେମାନେ ଭାରତର ଜନ୍ମଦିବସ ରୂପେ ପାଳନ କରୁଅଛେ ।

## ସ୍ୱାଧୀନତା ପରେ ଦେଶର ସଙ୍କଟ

ଦେଶ ସ୍ୱାଧୀନତା ଲାଭକଲା ଏଥିରେ ଆନନ୍ଦିତ ହେବାର କଥା । କିନ୍ତୁ ଭାରତ ସ୍ୱାଧୀନତା ଲାଭ କଲା ଦିନ, ମନରେ ବିଷାଦ ଘୋଟିଯାଇଥିଲା । ଦେଶର ଅଙ୍ଗଚ୍ଛେଦ ହେଲା । ଅଙ୍ଗଚ୍ଛେଦ ଅତି ଯନ୍ତ୍ରଣାଦାୟକ । ରକ୍ତପାତରେ ପ୍ରାଣବାୟୁ ଉଡ଼ିଯିବାର ଉପକ୍ରମ ହେଲା ପରି ସ୍ୱାଧୀନ ଭାରତରେ ଏପରି ରକ୍ତପାତ ଘଟିଲା, ଯଦ୍ଦ୍ୱାରା ଭାରତ ପୁଣି ବିପନ୍ନ ହୋଇ ପଡ଼ିଲାପରି ଅବସ୍ଥା ସୃଷ୍ଟି ହୋଇଗଲା । ଭାରତ, ପାକିସ୍ଥାନ ନାମରେ ଦେଶ ଦୁଇଭାଗ ହେଲେ ମଧ୍ୟ ସେହିକରେ

ହିନ୍ଦୁ ମୁସଲମାନ ବିଭେଦ ଶାନ୍ତ ପଡ଼ିଲା ନାହିଁ । ଇଂରେଜସରକାର ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବାକୁ ଯେଉଁ ବିଷ-ପ୍ରୟୋଗ କରିଥିଲେ ତାହାର ପ୍ରତିକ୍ରିୟା ଅତି ମାରାତ୍ମକ ଆକାର ଧାରଣ କଲା । ପାକିସ୍ଥାନରେ ମୁସଲମାନମାନେ ହିନ୍ଦୁଙ୍କୁ ମୂଳପୋଛ କରିବା ଇଚ୍ଛାରେ ସଂହାରକରି ସେମାନଙ୍କ ସମ୍ପତ୍ତି ଲୁଟ କରିଥିଲେ । ଭାରତରେ ସେହିପରି ହିନ୍ଦୁମାନେ ମୁସଲମାନ ଭାଇମାନଙ୍କୁ ସଂହାର କରିବାକୁ ଆରମ୍ଭ କରିଦେଲେ । ଲକ୍ଷ ଲକ୍ଷ ହିନ୍ଦୁ ପାକିସ୍ଥାନ ଛାଡ଼ି ପ୍ରାଣ ଭୟରେ ଭାରତକୁ ପଳାଇ ଆସିଲେ । ମୁସଲମାନ ମାନେ ସେହିପରି ଭାରତ ଛାଡ଼ି ପାକିସ୍ଥାନକୁ ପଳାଇବାକୁ ଲାଗିଲେ । ଦେଶରୁ ଗୋଟିଏ ସୁପ୍ରତିଷ୍ଠିତ ଶାସନ ଭାଙ୍ଗିଯାଇଛି । ଦେଶ ଦୁଇଖଣ୍ଡ ହୋଇ ଯାଇଛି । ଲକ୍ଷ ଲକ୍ଷ ନରନାରୀ ପ୍ରାଣ ବିକଳରେ କ୍ରନ୍ଦନ କରି ଇତସ୍ତତଃ ପଳାୟନ କରୁଥିଲେ । ପ୍ରବଳ ଝଡ଼ ତୋଫାନ ଓ ବଜ୍ରପାତ ସହିତ ଭୂମିକମ୍ପ ସୃଷ୍ଟି ହୋଇ ବସୁନ୍ଧରା ଥରି ଉଠିଲାପରି ଭାରତ ଓ ପାକିସ୍ଥାନ ଥରି ଉଠିଲା । ଏହା ଏକ ମହାପ୍ରଳୟ । ଏଥିରୁ ଦେଶ କିପରି ଉଦ୍ଧାର ପାଇବ ? ସମୁଦ୍ର ମନ୍ଥନରୁ ବିଷ ଉଦ୍‌ଗାରିତ ହେଲା ଭଳି, ଭାରତ ଓ ପାକିସ୍ଥାନ ବିଷ ଉଦ୍‌ଗାର କରୁଛନ୍ତି, ଏହି ବିଷ ଉଭୟ ଦେଶକୁ ଜାଳିପୋଡ଼ି ଭସ୍ମ କରିଦେବ ।

## ମହାତ୍ମା ଗାନ୍ଧୀଙ୍କ ଆତ୍ମବଳିଦାନ

ଏହି ସମୟରେ ମହାତ୍ମା ଗାନ୍ଧୀ ଆମରଣ ଅନଶନ ଆରମ୍ଭ କରିଦେଲେ । ସେ ଭାରତ ଦୁଇଖଣ୍ଡ ହେବାରେ ଅତ୍ୟନ୍ତ ମର୍ମବେଦନା ଅନୁଭବ କରୁଥିଲେ । ତାହାଙ୍କ ଇଚ୍ଛା ବିରୁଦ୍ଧରେ ଦେଶକୁ ଦୁଇଭାଗ କରାଯାଇଛି । ସେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ମିତ୍ରଭାବ ସ୍ଥାପନ କରିବାକୁ ଜୀବନବ୍ୟାପୀ ସାଧନା କରି ଆସିଛନ୍ତି । ବର୍ତ୍ତମାନର ଦୃଶ୍ୟ

ତାହାଙ୍କ ହୃଦୟରେ ଦାରୁଣ ଆଘାତ ଦେଲା । ହିନ୍ଦୁ ମୁସଲମାନ ଏପରି ହଣାକଟା ହୋଇ ମରିବେ, ଏ ଦୃଶ୍ୟ ଦେଖିବା ଅପେକ୍ଷା ମୃତ୍ୟୁକୁ ସେ ଶ୍ରେୟସ୍କର ମନେ କଲେ । ଭାରତରେ ମୁସଲମାନ ଭାଇମାନଙ୍କୁ ଆପଣାର ଭାଇପରି ଦେଖିବାକୁ ହିନ୍ଦୁସମାଜକୁ ପରାମର୍ଶ ଦେଇ ସେ ଆମରଣ ଅନଶନ ଆରମ୍ଭ କରିଥିଲେ । ତାହାଙ୍କ ଅନଶନ ହାରା ଦିଲ୍ଲୀ ଓ ତତ୍ସନ୍ନିକଟବର୍ତ୍ତୀ ଗ୍ରାମ ସହରମାନଙ୍କରେ ଶାନ୍ତି ଦେଖା ଦେଲା । ମୁସଲମାନ ଭାଇମାନଙ୍କ ନିରାପଦ ପାଇଁ ତାହାଙ୍କୁ ପ୍ରତିଶ୍ରୁତି ପ୍ରଦାନ କରାଗଲା । ଗାନ୍ଧିଜୀ ଅନଶନ ଭଙ୍ଗକଲେ ସତ୍ୟ କିନ୍ତୁ ମହାତ୍ମାଜୀଙ୍କର ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ମିତ୍ରତାସ୍ଥାପନ କରିବାର ଏ ରୂପ ଚେଷ୍ଟା କେତେକ ହିନ୍ଦୁଙ୍କ ମନରେ ଏକ ଭ୍ରାନ୍ତ ଧାରଣା ସୃଷ୍ଟି କରିଥିଲା । ହିନ୍ଦୁଙ୍କର ସର୍ବନାଶ ଘଟିଲା ଭଳି ଗାନ୍ଧୀଙ୍କର ଉତ୍କଟ ମୁସଲମାନ-ପ୍ରୀତି ବୋଲି ଅନେକ ହିନ୍ଦୁଙ୍କର ବିଶ୍ୱାସ ହେଲା । ସୁତରାଂ ହିନ୍ଦୁ ମୁସଲମାନ ସଂଘର୍ଷ ରୂପକ ମହାପ୍ରଳୟରୁ ଦେଶକୁ ରକ୍ଷା କରିବାକୁ ଚେଷ୍ଟା କରୁଥିଲାବେଳେ ଜଣେକ ଧର୍ମାନ୍ଧ ହିନ୍ଦୁ ଆତତାୟୀର ଗୁଳି ଦ୍ୱେଟରେ ମହାତ୍ମାଗାନ୍ଧୀଙ୍କ ମହାପ୍ରୟାଣ ଘଟିଲା । ମହାତ୍ମାଜୀଙ୍କ ବଳିଦାନ ସମଗ୍ର ପୃଥିବୀରେ ଶୋକଚ୍ଛାୟା ବିସ୍ତାର କରିଦେଲା ଏବଂ ଭାରତକୁ ଗଭୀର ଶୋକସାଗରରେ ବୁଡ଼ାଇ ଦେଇଥିଲା । ମହାତ୍ମାଗାନ୍ଧୀ ହିନ୍ଦୁ ମୁସଲମାନ ବିବାଦରୁ ଜାତ ଉତ୍କଟ ବିଷକୁ ପାନକରିବା ଦ୍ୱାରା ତାଙ୍କର ତିରୋଧାନ ଘଟିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ତାଙ୍କର ବଳିଦାନ ଦେଶରେ ଶାନ୍ତି ସ୍ଥାପନ କରିପାରିଛି । ସୁତରାଂ ଉତ୍କଟ ବିଷକୁ ସେ ହରଣ କରିଥିଲେ ବୋଲି ସ୍ୱୀକାର କରିବାକୁ ପଡ଼ିବ ।

ଦେଶର ଶାସନ ଦାୟିତ୍ୱ କଂଗ୍ରେସର ନେତୃବୃନ୍ଦ ଗ୍ରହଣ କରି ଥିଲେ । ଶାସନ ପରିଚାଳନା କରିବାର ଅଭିଜ୍ଞତା ସେମାନଙ୍କର ନାହିଁ ।

ଇଂରେଜ ଶାସକ ଗୋଷ୍ଠୀ ଏ ଦେଶ ଛାଡ଼ି ଚାଲିଗଲେ । ସେମାନଙ୍କ ସ୍ଥାନ ଶୂନ୍ୟ ପଡ଼ିଲା । ସେମାନେ ବଡ଼ ଦକ୍ଷ ଓ ପାରଙ୍ଗମ କର୍ମଚାରୀ ଥିଲେ । ଯେଉଁ କର୍ମଚାରୀ ସବୁ ରହିଲେ ସେମାନେ ହୁକୁମ ମାନି କାମ କରିବାକୁ ଶିଖିଛନ୍ତି । ସେମାନଙ୍କର ହାକିମ ମନୋବୃତ୍ତି ରହିଛି । ଭାରତର ଖଜଣାଖାନା ଶୂନ୍ୟ । ବିଗତ ଛ ବର୍ଷକାଳ ବିଶ୍ୱଯୁଦ୍ଧ ଲାଗିଥିଲା । ପୃଥିବୀର ଉତ୍ପାଦନ ଶକ୍ତି ସବୁ ଯୋଡ଼ ପାଉଁଶ ହୋଇ ଯାଇଛି । ଦେଶରେ ଦୁର୍ଭିକ୍ଷ ଓ ଅନାଟନ । ଯେଉଁ ଆଡ଼କୁ ଚାହିଁଲେ ଆଶା ଭରସାର ଚିହ୍ନ କିଛି ଦେଖା ଯାଉନାହିଁ । ଲକ୍ଷ ଲକ୍ଷ ନର-ନାରୀ ପଥର ଉପରେ ପାଲଟିଛନ୍ତି । ସେମାନଙ୍କ ବିକଳ କ୍ରନ୍ଦନ ଶୁଣିଲେ ପଥର ପାଣି ଫାଟିଯାଏ । ଏପରି ମୁହୂର୍ତ୍ତରେ ଗାନ୍ଧିଜୀଙ୍କୁ ହରାଇ କଂଗ୍ରେସ ନେତୃବୃନ୍ଦ ଶୋକ ଦୁଃଖରେ ଅଧୀର ହୋଇ ପଡ଼ିଲେ । ଉତ୍କଟ ସଙ୍କଟପୂର୍ଣ୍ଣ ପରିସ୍ଥିତି ଦେଶରେ ଦେଖା ଦେଇଛି । ଲକ୍ଷ ଲକ୍ଷ ବାସଚ୍ୟୁତ ନରନାରୀଙ୍କୁ ଆଶ୍ୱାସନା ଦେବାକୁ ପଡ଼ିବ । ସେମାନଙ୍କୁ ଖାଦ୍ୟବସ୍ତୁ ଯୋଗାଇ ସେମାନଙ୍କ ଥଇଥାନର ବ୍ୟବସ୍ଥା କରିବାକୁ ପଡ଼ିବ । ନବଲବ୍ଧ ସ୍ୱାଧୀନତା ରକ୍ଷା କରିବାକୁ ହେଲେ ଦେଶ ପାଇଁ ଶାସନ ବ୍ୟବସ୍ଥା ପ୍ରସ୍ତୁତ କରିବା ଗୋଟିଏ ବିକଟ ସମସ୍ୟା । ନେତୃବୃନ୍ଦଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ଏବଂ ହୃଦୟ ଶୋକ ଦୁଃଖରେ ବ୍ୟାକୁଳ । ତଥାପି ମହାତ୍ମା ଗାନ୍ଧୀଙ୍କର ବାଣୀ ଓ ଆଦର୍ଶକୁ ସ୍ମରଣ କରି କଂଗ୍ରେସର ନେତୃବୃନ୍ଦ ଦେଶକୁ ଯେପରି ସମ୍ଭାଳି ପାରିଛନ୍ତି ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଭାରତର ଅନ୍ତର୍ନିହିତ ଅମର ଶକ୍ତି ଏହିଠାରେ ଆତ୍ମପ୍ରକାଶ କରିଛି । ସୁତରାଂ କୌଣସି ସମୟରେ ଦେଶର ପରିସ୍ଥିତିକୁ ଦେଖି ନିରାଶ ହେବା ଉଚିତ ନୁହେଁ ।

## ଦେଶର ଶାସନ ଖସଡ଼ା ପ୍ରସ୍ତୁତ

ଇଂରେଜ ଶାସନ ଲୋପ ପାଇଲା—ଭାରତ ଦୁଇ ଖଣ୍ଡ ହୋଇଗଲା । ଶାସନ ଶୃଙ୍ଖଳା ରକ୍ଷା କରି ଦେଶକୁ ପରିଚାଳନା କରିବ ପାଇଁ ଶାସନ ବିଧାନ ଗଢ଼ିବା ଦରକାର । ଯେଉଁ ବିଧାନ ଗଢ଼ାଯିବ ତାହା ସମଗ୍ର ଭାରତ ଦେଶ ପାଇଁ ହେବ । କିନ୍ତୁ ଦେଶରେ ଛ ଶହ ପର୍ଯ୍ୟନ୍ତ ଦେଶୀୟ ରାଜା ମହାରାଜା ଅଛନ୍ତି । ଇଂରେଜ ସରକାରଙ୍କ ଅଧୀନରେ ସେମାନେ ପ୍ରତ୍ୟେକେ ଭାରତ ଭୂଖଣ୍ଡରେ ଛୋଟ ବଡ଼ କରି ଖଣ୍ଡିଏ କରି ରାଜ୍ୟର ଶାସକ ଥିଲେ । ସେମାନେ ବର୍ତ୍ତମାନ ନିଜକୁ ସ୍ୱାଧୀନ ରାଜା ବୋଲି ବିଚାରିଛନ୍ତି । ଗୋଟିଏ ଦେଶରେ ଛୋଟ ବଡ଼ ହୋଇ ଅନେକ ରାଜା ମହାରାଜା ଅଥବା ଦେଶ ରହିବା ଉଚିତ ନୁହେଁ । ଇଂରେଜ ଭାରତ ଛାଡ଼ି ଚାଲିଗଲେ ; ଦେଶୀୟ ରାଜା ମହାରାଜା ସବୁ ଏ ଦେଶରେ ରହିବେ । ସେମାନଙ୍କ ଅଧୀନରେ କୋଟି କୋଟି ପ୍ରଜା ଅଛନ୍ତି । ରାଜ୍ୟ ଶାସନରେ ସେମାନଙ୍କର କୌଣସି ଅଧିକାର ନାହିଁ । ଏହି ଅଧିକାର ପାଇବାକୁ ସେମାନେ ମଧ୍ୟ ଆନ୍ଦୋଳନ କରି ବହୁ ଦୁଃଖ ନିର୍ଯ୍ୟାତନା ଭୋଗ କରିଛନ୍ତି । ସେମାନଙ୍କୁ ମୁକ୍ତ ନ କଲେ ସ୍ୱାଧୀନତାର କୌଣସି ମୂଲ୍ୟ ରହିବ ନାହିଁ । ଏହା ଗୋଟିଏ ଅତି ବିକଟ ସମସ୍ୟା । ଦେଶ ପାଇଁ ଶାସନ ବିଧାନ ଗଢ଼ିବା ପ୍ରଶ୍ନ ବିଚାର କଲା ବେଳକୁ ଏହା ଗୋଟିଏ ବଡ଼ ପ୍ରତିବନ୍ଧକ ହୋଇ ଠିଆ ହେଲା । ଏହି ପ୍ରତିବନ୍ଧକ ଦୂର କରିବାକୁ ହେବ । କଂଗ୍ରେସ ଏହି ରାଜା ମହାରାଜାମାନଙ୍କ ମନକୁ ମନାଇ ଶାନ୍ତିପୂର୍ଣ୍ଣ ଭାବରେ ଏହି ସମସ୍ୟା ସମାଧାନ କରିପାରିଛି । ସେହି ସବୁ ରାଜ୍ୟକୁ ଭାରତରେ ମିଶାଇ ଏକ ବିଶାଳ ଭାରତର ମୂଳ ଭିତ୍ତିକୁ ଦୃଢ଼ କରାହୋଇଛି । ସମଗ୍ର ଭାରତରୁ ଲୋକ ପ୍ରତିନିଧି ବସି ଗୋଟିଏ ଶାସନ ବିଧାନ ଗଢ଼ାଯାଇଛି । ସେହି ଶାସନ ବିଧାନ ଅନୁସାରେ ବର୍ତ୍ତମାନ ଆମ୍ଭ ଦେଶର ଶାସନ କାର୍ଯ୍ୟ ଚାଲୁଛି ।

# ଆମ୍ଭ ଶାସନ ବିଧାନର ରୂପ

ବର୍ତ୍ତମାନ ଆମ୍ଭ ଦେଶର ଶାସନ ହେଉଛି ସ୍ୱରାଜ୍ୟ ଶାସନ । ଏହାର ଅର୍ଥ ପ୍ରଜା ଶାସନ । ପ୍ରଜା ଶାସନ କହିଲେ ଦେଶର ଶାସନ ଡୋରି ପ୍ରଜାଙ୍କ ହାତକୁ ଆସିଲା । ଭାରତରେ ବାସ କରୁଥିବା ପ୍ରତ୍ୟେକ ନରନାରୀ ବର୍ତ୍ତମାନ ଭାରତ ଦେଶର ମାଲିକ । ଭାରତକୁ ଭାଷାସୂତ୍ରରେ ଭାଗ ଭାଗ କରି କେତେଗୁଡ଼ିଏ ପ୍ରଦେଶ ଗଢ଼ାଯାଇଛି । ପ୍ରତି ପ୍ରଦେଶ ପାଇଁ ବିଧାନ ସଭା ଏବଂ କେନ୍ଦ୍ର ପାଇଁ ପାର୍ଲିଆମେଣ୍ଟ ଗଠନ କରିବାର ବ୍ୟବସ୍ଥା ହୋଇଛି । ଏହି ବିଧାନ ସଭା ଓ ପାର୍ଲିଆମେଣ୍ଟକୁ ଦେଶର ପ୍ରଜାମାନେ ଭୋଟ ଦାନ କରି ସେମାନଙ୍କ ପ୍ରତିନିଧି ବାଛୁଛନ୍ତି । ପ୍ରତି ପ୍ରଦେଶର ବିଧାନ ସଭା ଓ କେନ୍ଦ୍ର ପାର୍ଲିଆମେଣ୍ଟରେ ପ୍ରଜା ପ୍ରତିନିଧି ବସି ଦେଶ ପାଇଁ ଆଇନ କାନୁନ ବାନ୍ଧୁଛନ୍ତି । ବିଧାନ ସଭାରେ ପ୍ରଦେଶ ପାଇଁ ଏବଂ ପାର୍ଲିଆମେଣ୍ଟରେ ସମଗ୍ର ଭାରତ ପାଇଁ ଆଇନ କାନୁନ ତିଆରି ହେଉଛି । ପ୍ରଜା-ପ୍ରତିନିଧିମାନେ ଆପଣା ଭିତରୁ ଉପଯୁକ୍ତ ବ୍ୟକ୍ତି ବାଛି ମନ୍ତ୍ରୀମଣ୍ଡଳ ଗଠନ କରୁଛନ୍ତି । ଯେଉଁ ସବୁ ଆଇନ ହେଉଛି ଅବା ଦେଶର ଦୁଃଖ ଅନାଟନ ଦୂର କରିବାକୁ ଯେଉଁ କର୍ମ ଯୋଜନା ସେମାନେ ବାନ୍ଧୁଛନ୍ତି ତାହାକୁ ମନ୍ତ୍ରୀମଣ୍ଡଳ କାର୍ଯ୍ୟ କରାଉଅଛନ୍ତି । ସବୁ କାର୍ଯ୍ୟ କେତେଗୁଡ଼ିଏ ବିଭାଗରେ ଭାଗ କରାଯାଉଛି । ପ୍ରତି ବିଭାଗ ଦାୟିତ୍ୱରେ ଜଣେ ମନ୍ତ୍ରୀ ଅଛନ୍ତି । ମନ୍ତ୍ରୀମାନେ ବିଭାଗୀୟ କର୍ମଚାରୀ-ମାନଙ୍କ ସାହାଯ୍ୟରେ କାର୍ଯ୍ୟ ସବୁ ସଂପାଦନ କରୁଛନ୍ତି । ପ୍ରତି ପାଞ୍ଚ ବର୍ଷରେ ବିଧାନ ସଭା ଓ ପାର୍ଲିଆମେଣ୍ଟର ମନ୍ତ୍ରୀ ଏବଂ ସଭ୍ୟମାନଙ୍କୁ ପରୀକ୍ଷା କରାଯାଉଛି । ସେମାନେ ପାଞ୍ଚବର୍ଷରେ କ'ଣ କରିଛନ୍ତି, ତାହା ପ୍ରଜା ସାଧାରଣଙ୍କୁ ବୁଝାଉ ଅଛନ୍ତି ଏବଂ ପୁଣି କଣ ସବୁ କାମ କପରି କରିବାକୁ ବିଚାର ବାନ୍ଧିଛନ୍ତି, ତାହା ବୁଝାଇବାକୁ ପଡ଼ୁଛି । ଏହିପରି

ମନ୍ତ୍ରୀ ଓ ସଭ୍ୟମାନଙ୍କୁ ପରୀକ୍ଷା ଦେବାକୁ ପଡ଼ୁଛି । ସେମାନଙ୍କ ଉତ୍ତର ସନ୍ତୋଷଜନକ ବିବେଚିତ ହେଲେ ପ୍ରଜା ସାଧାରଣଙ୍କଠାରୁ ପାସ୍ ମାର୍କ ଲାଭ କରି ପୁଣି ବିଧାନ ସଭା ଓ ପାର୍ଲିଆମେଣ୍ଟକୁ ନିର୍ବାଚିତ ହେଉଛନ୍ତି । ଏହିପରି ଭାବରେ ଆମ୍ଭର ଶାସନ ବିଧାନ ତାହାର ସ୍ୱରୂପ ପ୍ରକାଶ କରୁଛି । ଏହା ପ୍ରଜାଙ୍କ ଶୁଭକାମନା ।

## ଦେଶର ସମସ୍ୟା

ଭାରତରେ ବହୁକାଳ ବିଦେଶୀ ଶାସନ ଚାଲିଲା । ପ୍ରଜାଙ୍କର କୌଣସି ସ୍ୱାଧୀନଚିନ୍ତା ସେମାନଙ୍କ ମନରେ ପ୍ରବେଶ କରିନାହିଁ । ଦେଶରୁ ଖଜଣା ଟିକସ ଆଦାୟ କରି ଶାନ୍ତି ଶୃଙ୍ଖଳା ରକ୍ଷା କରିବା ସେମାନଙ୍କର ଥିଲା ଏକମାତ୍ର କାର୍ଯ୍ୟ । ପ୍ରଜାଙ୍କର ମତାମତ ସେମାନେ ଲୋଡ଼ୁ ନ ଥିଲେ । ପ୍ରଜାଙ୍କ ପାଇଁ ଯାହା କିଛି କାମ ହେଉଥିଲା, ତାହା ସେମାନଙ୍କ ଦୟା ଓ ଅନୁଗ୍ରହର ଫଳ ବ୍ୟତୀତ ଆଉ କିଛି ନୁହେଁ । କୌଣସି କାର୍ଯ୍ୟରେ ଦୋଷ ଗୁଣ ବାଛିବାର ଅଧିକାର ପ୍ରଜାଙ୍କର ନ ଥିଲା । ଦୋଷ ଗୁଣ ବାଛିବାକୁ ଇଚ୍ଛା ଥିଲେ ମଧ୍ୟ ମନ ଖୋଲି ତାହା ପ୍ରକାଶ କରିବାକୁ ସାଧାରଣ ପ୍ରଜାଙ୍କର ସାହସ ନ ଥିଲା । କିନ୍ତୁ ବର୍ତ୍ତମାନ ସେପରି ଅବସ୍ଥା ଆଉ ନାହିଁ । ଦେଶର ବର୍ତ୍ତମାନ ସରକାର ପ୍ରଜାଙ୍କର । ପ୍ରଜାଙ୍କର ମଙ୍ଗଳ ସାଧନ କରିବା ବର୍ତ୍ତମାନ ସରକାରଙ୍କର ଏକମାତ୍ର କାର୍ଯ୍ୟ । କିନ୍ତୁ ବହୁକାଳ ଦେଶ ପରାଧୀନ ଥିବାରୁ ପ୍ରଜାଙ୍କର ବହୁ ଅଭାବ ଜମା ହୋଇ ରହିଛି । ପୃଥିବୀରେ ଅନ୍ୟସବୁ ଦେଶ ଦୁଇ ଶହ ବର୍ଷର ପଥ ଆଗକୁ ମାଡ଼ି ଗଲେଣି । ଦୁଇ ଶହ ବର୍ଷ ପଛରେ ଆମ ଦେଶ ପଡ଼ିଛି । ଦୁଇ ଶହ ବର୍ଷର କାର୍ଯ୍ୟ ବାକି ପଡ଼ିଛି । ଏ ସବୁ ପୂରଣ କରିବାକୁ ଆମ୍ଭର ସମ୍ବଳ ନାହିଁ । କୌଣସି ଉପକରଣ ନାହିଁ । ଆଜି ପର୍ଯ୍ୟନ୍ତ ପ୍ରଜାଙ୍କର

ପାଟି ଫିଟେଇବାକୁ ସାହସ ନ ଥିଲା । ଦେଶରେ ସ୍ୱରାଜ୍ୟ ହେବାରୁ ପ୍ରଜାଙ୍କର ପାଟି ଫିଟିଛି । ସେ ମନ ଖୋଲି ସବୁ କଥା କହି ପାରୁଛନ୍ତି । କିନ୍ତୁ ନିଜର ଅବସ୍ଥାକୁ ବିଚାର କରି ନିଜର କର୍ତ୍ତବ୍ୟ ନିର୍ଦ୍ଧାରଣ କରି ପାରୁନାହାନ୍ତି । ଦେଶ ତଥା ଗ୍ରାମର ଉନ୍ନତି ପାଇଁ ଦେଶର ପ୍ରତ୍ୟେକ ନରନାରୀଙ୍କ ହୃଦୟରେ କର୍ତ୍ତବ୍ୟ କର୍ମ ପାଇଁ କୌଣସି ଭାବନା ଉଦ୍ରେକ ହୋଇ ପାରୁନାହିଁ । ଦେଶର ପ୍ରତ୍ୟେକ ନରନାରୀଙ୍କ ହୃଦୟରେ ଦେଶାତ୍ମବୋଧ ଜ୍ଞାନ ଜାଗ୍ରତ କରିବା ଗୋଟିଏ ବଡ଼ ସମସ୍ୟା । ଦେଶର ସମସ୍ୟାସବୁ ସମାଧାନ କରିବାକୁ ବିଭିନ୍ନ କର୍ମ ଯୋଜନା ପ୍ରସ୍ତୁତ କରାଯାଉଛି । ଗୋଟିଏ ସମସ୍ୟା ସମାଧାନ କରି କାର୍ଯ୍ୟ କରିବାକୁ ଉଦ୍ୟତ ହେବା ବେଳକୁ ଆଉର ଗୋଟିଏ ଜଟିଳ ସମସ୍ୟା ମୁଣ୍ଡ ଟେକି ଠିଆ ହେଉଛି । ଦେଶର ଅଭାବ ଅସୁବିଧାର ସୀମା ଠିକଣା କରିବା ଅସମ୍ଭବ ବ୍ୟାପାର ହୋଇଛି । ତଥାପି ଦେଶକୁ ସମୃଦ୍ଧିଶାଳୀ କରି ଗଠନ କରିବା ପାଇଁ କର୍ମ ଯୋଜନା ସବୁ ଦେଶରେ କାର୍ଯ୍ୟକାରୀ କରାଯାଉଛି ।

## ଦେଶରେ ଆତ୍ମବିଶ୍ୱାସର ଅଭାବ

ମନୁଷ୍ୟ ଜୀବନରେ ସୁଖ ଭୋଗ କରିବାକୁ ସବୁବେଳେ ଇଚ୍ଛାକରେ ଏବଂ ଏହି ସୁଖ ଅନ୍ୱେଷଣରେ ଜୀବନକୁ ବିତାଇ ଦିଏ । ନିଜର ଶକ୍ତି ଉପରେ ବିଶ୍ୱାସ ରଖି ସମସ୍ତ ପ୍ରକାର ବାଧାବିଘ୍ନ ଦୂର କରିବାକୁ ମନର ସାହସ ଦରକାର । ନିଜର କଠୋର ପରିଶ୍ରମ ଦ୍ୱାରା କେବଳ ଅଭାବ ଦୂର ହୋଇ ପାରିବ, ଏହି ଆତ୍ମବିଶ୍ୱାସ ରହିବା ଆବଶ୍ୟକ । ଏହି ଆତ୍ମବିଶ୍ୱାସ ରହିଲେ ଉପାୟ ଦେଖା ପଡ଼ିବ । ଉପାୟ ଦେଖାପଡ଼ିଲେ ଅନବରତ ପରିଶ୍ରମ କରି ଜୀବନକୁ ସୁଖୀ କରାଇ ହେବ । ଦେଶରେ ସ୍ୱରାଜ୍ୟ ପ୍ରତିଷ୍ଠା କରି

ପାରିଛେ । ସ୍ୱରାଜ୍ୟରେ ସ୍ୱଇଚ୍ଛା ପ୍ରଥମ ଉପାଦାନ । ଆମ୍ଭେମାନେ ଯେପରି ଇଚ୍ଛାକରିବା ଆମ ପରିବାର, ଆମ୍ଭ ଗ୍ରାମ ଓ ଦେଶକୁ ସେପରି ଗଢ଼ିପାରିବା । ଦେଶର ଜନସାଧାରଣଙ୍କ ବସ୍ତୁର ବୃଦ୍ଧିରେ ଦେଶକୁ ଗଢ଼ିବା ପାଇଁ ସ୍ୱଇଚ୍ଛା ପ୍ରକାଶ ପାଇବ ଏବଂ ଦେଶର ସାମାଜିକ ଓ ଅର୍ଥନୈତିକ ଅବସ୍ଥାରେ ପରିବର୍ତ୍ତନ ଆଣିବା ପାଇଁ ନିଜ ଉପରେ ବିଶ୍ୱାସ ସ୍ଥାପନ କରି କାର୍ଯ୍ୟ କରିବା ପାଇଁ ଆତ୍ମବିଶ୍ୱାସର ପ୍ରକାଶ ପାଇବା ଉଚିତ । ଯେଉଁ ପାରିପାର୍ଶ୍ୱିକ ପରିସ୍ଥିତିରେ ଆମ୍ଭେମାନେ ବାସ କରୁଛେ ଏବଂ ଯେଉଁ ଅଗଣିତ ନରନାରୀଙ୍କ ସହିତ ମିଳିମିଶି ଜୀବନ ନିର୍ବାହ କରୁଛେ ତନ୍ମଧ୍ୟରେ ଆମ୍ଭର ସୁଖ ଦୁଃଖ ଜଡ଼ିତ ହୋଇ ରହିଅଛି । ସେହି ସବୁର ଉନ୍ନତି ନ ଘଟିଲେ—ଆମ୍ଭର ଗ୍ରାମ ତଥା ଦେଶର କାହାରି କିଛି ଉନ୍ନତି ଘଟି ନ ପାରେ । ଏହି ସବୁର ପରିବର୍ତ୍ତନ ଘଟାଇବାକୁ ହିଁ ବସ୍ତୁର ଆଲୋଚନା କରି କର୍ମ ଯୋଜନା ପ୍ରସ୍ତୁତ କରାଯାଉଛି । କେବଳ ଦେଶବାସୀଙ୍କର ଆତ୍ମବିଶ୍ୱାସ ଅଭାବରୁ ଅନ୍ଧାରକୁ ଢେଙ୍କା ଫିଙ୍ଗିଲା ପରି କାର୍ଯ୍ୟସବୁ ହେଉଛି ।

## ଗ୍ରାମ ଦେଶର ମୂଳଭିତ୍ତି

ଭାରତ ସ୍ୱାଧୀନ ହେଲା, କିନ୍ତୁ ସ୍ୱାଧୀନତାର ବାଣୀ ପଲ୍ଲୀ-ଜୀବନକୁ ସ୍ପର୍ଶ କରିଥିଲା ପରି ବୁଝାପଡ଼ୁ ନାହିଁ । ଭାରତ କହିଲେ ଭାରତର ଅସଂଖ୍ୟ ପଲ୍ଲୀଗ୍ରାମ । ଭାରତର ମୂଳପିଣ୍ଡ ହେଉଛି ପଲ୍ଲୀଗ୍ରାମ । ଭାରତରେ ପାଞ୍ଚଲକ୍ଷ ପଚିଶ ହଜାର ପଲ୍ଲୀଗ୍ରାମ ଅଛି । ଏହି ପଲ୍ଲୀଜୀବନରେ ଭାରତର ଅମର ଶକ୍ତି ଲୁଚି ରହିଛି । ପଲ୍ଲୀ ଜୀବନରେ ପରିବର୍ତ୍ତନ ନ ଘଟିଲେ ସେହି ଶକ୍ତି ଆତ୍ମପ୍ରକାଶ କରି ପାରିବ ନାହିଁ । ଏହି ସତ୍ୟ ମହାତ୍ମା ଗାନ୍ଧୀ ଉପଲବ୍‌ଧି କରି

ପାଉଥିଲେ । ତେଣୁ ସେ ପଲ୍ଲୀଗ୍ରାମରେ ତାଙ୍କର ଆଶ୍ରମ ସ୍ଥାପନ କରି ପଲ୍ଲୀ ସଂଗଠନରେ ମନପ୍ରାଣ ଢାଳି ଦେଇଥିଲେ । ମହାତ୍ମାଗାନ୍ଧୀ ତାହାଙ୍କ ଜୀବନରେ ସବୁବେଳେ ପଲ୍ଲୀଜୀବନର ଚିତ୍ରକୁ ସ୍ମରଣକରି ତାହାଙ୍କ ସମସ୍ତ କର୍ମ ଯୋଜନା ପ୍ରସ୍ତୁତ କରିଛନ୍ତି । ଦକ୍ଷିଣ ଆଫ୍ରିକାରେ ଯେଉଁ ଅନୁଷ୍ଠାନ ଗଢ଼ିଥିଲେ ତାହା ପଲ୍ଲୀ ଅଞ୍ଚଳରେ ଥିଲା । ଭାରତରେ ସାବରମତି ସତ୍ୟାଗ୍ରହ ଆଶ୍ରମ ଓ ଓ୍ୟାର୍ଦ୍ଧା ସେବାଶ୍ରମ ଏହି ପଲ୍ଲୀରେ ଅବସ୍ଥିତ । ମହାତ୍ମାଗାନ୍ଧୀଙ୍କର ସମସ୍ତ ପ୍ରକାର ଗଠନମୂଳକ କାର୍ଯ୍ୟ ପଲ୍ଲୀଗ୍ରାମର ଉନ୍ନତି ସାଧନ କରିବା ଚିନ୍ତାର ରୂପାନ୍ତରିତ ମାତ୍ର । ଭାରତ ସ୍ୱାଧୀନତା ପାଇବାକୁ ଅପେକ୍ଷା ନ କରି ନାନା ପ୍ରକାର ସଂଗଠନ କାର୍ଯ୍ୟ ସେ ଆରମ୍ଭ କରି-ଥିଲେ । ସ୍ୱାଧୀନତା ସଂଗ୍ରାମ ପାଇଁ ଦେଶକୁ ସଂଗଠନ କରିବାକୁ ସେ ଯେଉଁ ବାର୍ଦ୍ଦୋଲି କାର୍ଯ୍ୟକ୍ରମ ପାଳନ କରିବାକୁ ଦେଶବାସୀଙ୍କୁ ଆହ୍ୱାନ କରିଥିଲେ ତହିଁରେ ଏହି ପଲ୍ଲୀଜୀବନକୁ ସୁଦୃଢ଼ କରି ଗଢ଼ିବା ଏକମାତ୍ର ଉଦ୍ଦେଶ୍ୟ ଥିଲା । ସୁତରାଂ ବର୍ତ୍ତମାନ ଆମ୍ଭର ସ୍ୱରାଜ୍ୟ ସରକାର ଏହି ପଲ୍ଲୀଗ୍ରାମମାନଙ୍କର ସମୃଦ୍ଧ ଉନ୍ନତି ସାଧନ କରିବା ଉଦ୍ଦେଶ୍ୟରେ ବିଭିନ୍ନ କର୍ମ ଯୋଜନା ପରିକଳ୍ପନା କରିଛନ୍ତି ।

## ଗ୍ରାମଗୋଷ୍ଠୀ ଯୋଜନା

ଦୀର୍ଘକାଳ ବିଦେଶୀ ଶାସନରେ ପଡ଼ିରହି ପଲ୍ଲୀ-ଜୀବନ ନିଷ୍ପ୍ରଭ ହୋଇ ପଡ଼ିଛି । ଜୀବନ ଜଡ଼ ପାଲଟି ଯାଇଛି । ଏହି ମୃତପ୍ରାୟ ପଲ୍ଲୀ-ଜୀବନରେ ପ୍ରାଣ ସଂଚାର କରିବା ପାଇଁ ଜାତୀୟ ସଂପ୍ରସାରଣ ଅର୍ଥାତ୍ ଗ୍ରାମର ସମୃଦ୍ଧ ଉନ୍ନତିମୂଳକ ଯୋଜନାର କଳ୍ପନା । ଏହାକୁ ଗ୍ରାମଗୋଷ୍ଠୀ ଯୋଜନା ନାମରେ ଆମ୍ଭେମାନେ ଜାଣିବାକୁ ପାଉଛେ । ଏହି ଯୋଜନା ୧୯୫୨ ସସିହା ଅକ୍ଟୋବର ଦୁଇ

ତାରିଖରୁ ଦେଶରେ କାର୍ଯ୍ୟକାରୀ କରାଯାଉଛି । ଏହି ଦିବସଟି ଆମଦେଶ ପକ୍ଷରେ ଗୋଟିଏ ଶୁଭଦିନ ; ଜାତିର ଗୋଟିଏ ମହୋତ୍ସବ ଦିବସ । ଏହିଦିନ ମହାପୁରୁଷ ମହାତ୍ମାଗାନ୍ଧୀ ଆମ ଦେଶରେ ଜନ୍ମଲାଭ କରିଥିଲେ । ଏହି ଦିବସଟିକୁ ଆମ୍ଭେମାନେ ପ୍ରତିବର୍ଷ ଗୋଟିଏ ଜାତୀୟ ପର୍ବ ରୂପେ ପାଳନ କରୁଛେ । ସୁତରାଂ ସେହି ମହାପୁରୁଷଙ୍କୁ ସ୍ମରଣ କରି ଏହି ପୁଣ୍ୟ ଦିବସରେ ଜାତୀୟ ସଂପ୍ରସାରଣ କର୍ମଯୋଜନା ଶୁଭାରମ୍ଭ କରାଯାଇଥିଲା । ସମଗ୍ର ଭାରତରେ ଏହି ଯୋଜନା ପ୍ରସାର ଲାଭକରିବ । ସାଧାରଣତଃ ଲକ୍ଷେ ଲୋକ ବାସ କରୁଥିବା ଅଞ୍ଚଳରେ ଗୋଟିଏ କରି ବ୍ଲକ୍ ସ୍ଥାପନ କରାଯାଇଛି, ୧୯୬୩ ସସିହା ଶେଷ ହେବା ପୂର୍ବରୁ ଭାରତର ସମସ୍ତ ଗ୍ରାମ ବ୍ଲକ୍ ଅନ୍ତର୍ଗତ ହୋଇଯିବ । ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବା ବର୍ତ୍ତମାନ ଆମ୍ଭର ଏକମାତ୍ର ଲକ୍ଷ୍ୟ । ଦେଶର ମୂଳଦୁଆ ଦୃଢ଼ ନ ହେଲେ ଦେଶ କାହା ଉପରେ ନିର୍ଭର କରି ଉପରକୁ ଉଠିବ ? ଏଣୁ ଗ୍ରାମଗୋଷ୍ଠୀ ଯୋଜନା ହେଉଛି ଦେଶର ମୂଳଦୁଆ, ଗ୍ରାମକୁ ସୁଦୃଢ଼ କରିବାର କର୍ମଯୋଜନା ।

## ଦେଶରେ ବିପ୍ଳବ ସୃଷ୍ଟି କରିବାକୁ ହେବ ।

ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବା ଉଦ୍ଦେଶ୍ୟରେ ପଲ୍ଲୀଗ୍ରାମକୁ ଦେଶର ମୂଳଦୁଆ ରୂପେ ସୁଦୃଢ଼ କରିବା ହେଲା କାମ । ଏଣୁ ବ୍ଲକ ସ୍ଥାପନ କରାଯାଇ ବିଭିନ୍ନ ପ୍ରକାରର ଉନ୍ନତିମୂଳକ କର୍ମ ଯୋଜନାକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା ହେଉଛି । ଏହି ବ୍ଲକ କାମକୁ ପ୍ରଧାନ ମନ୍ତ୍ରୀ ଜବାହରଲାଲ ନେହରୁ ଗୋଟିଏ ବିପ୍ଳବାତ୍ମକ କର୍ମ ବୋଲି ଆଖ୍ୟା ଦେଇଛନ୍ତି । ମନୁଷ୍ୟର ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସବୁ ସମୟରେ ଏବଂ ସବୁ ଅବସ୍ଥାରେ ପରି-

ବର୍ତ୍ତନ ଘଟାଇ ପାରିବା ଭଳି ବ୍ଲକ କାର୍ଯ୍ୟରେ ସୋପାନ ବନ୍ଧା ଯାଇଛି । ବାସ୍ତବରେ ବ୍ଲକ କାର୍ଯ୍ୟକ୍ରମର ଲକ୍ଷ୍ୟ ହେଲା ପଲ୍ଲୀରେ ବିପ୍ଳବ ସୃଷ୍ଟି କରିବା । ବିପ୍ଳବ ସୃଷ୍ଟି କରିବା ଅର୍ଥ ମନୁଷ୍ୟର ବିଚାର ବୁଦ୍ଧିରେ ପରିବର୍ତ୍ତନ ଆଣି ଜୀବିକା ଅର୍ଜନର ପନ୍ଥାକୁ ସରଳ ଓ ସୁଗମ କରି ଗଢ଼ିବା । ଭାରତର ପାଞ୍ଚ ଲକ୍ଷ ପଚାଶ ହଜାର ଗ୍ରାମରେ ବାସ କରୁଥିବା କୋଟି କୋଟି ନରନାରୀ ନିଜ ନିଜର ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କର୍ମ କରିବାକୁ ମନରେ ଆଗ୍ରହ ପ୍ରକାଶ କରି ଅପୂର୍ବ ଆନନ୍ଦ ଅନୁଭବ କରି ପାରୁଥିବାର ଦେଖାଗଲେ ତାହା ହିଁ ହେବ ପ୍ରକୃତ ବିପ୍ଳବ । ଏହି ବିପ୍ଳବ ସୃଷ୍ଟି କରିବା ଉଦ୍ଦେଶ୍ୟରେ ବ୍ଲକର କାର୍ଯ୍ୟକ୍ରମ କଳ୍ପନା କରାଯାଇଅଛି । ପଲ୍ଲୀ ବାସୀଙ୍କ ବିଚାର ବୁଦ୍ଧି ଉପରେ ସବୁ ନିର୍ଭର କରୁଛି । ଗ୍ରାମକୁ ନୂତନ କରି ଗଢ଼ିବାକୁ ସେମାନେ ଚିନ୍ତା କରିବେ । ଉପାୟ ମଧ୍ୟ ସେମାନେ ଅବଲମ୍ବନ କରିବେ । ବ୍ଲକ୍ ସବୁ ବିଷୟରେ ବାଟ ଦେଖାଇବ, ବୁଦ୍ଧି ଓ ପରାମର୍ଶ ଦେବ ଏବଂ କିଛି କିଛି ଅର୍ଥ ମଧ୍ୟ ସାହାଯ୍ୟ କରିବ । ଗ୍ରାମକୁ ନିଜର ବିଗୃର ତହିଁରେ ଥିବା ଅଭାବ ଅନାଟନ ଦୂର କରିବାକୁ କାର୍ଯ୍ୟ କଲେ ଗ୍ରାମବାସୀମାନେ ଯାହା ଆବଶ୍ୟକ କରିବେ ସେ ସବୁରେ ବ୍ଲକ୍ ସବୁପ୍ରକାର ସାହାଯ୍ୟ କରିବ । କୃଷି, ସ୍ୱାସ୍ଥ୍ୟ, ଗୋପାଳନ, ଶିକ୍ଷା, ରାସ୍ତାଘାଟ ନିର୍ମାଣ, ଜଳ ଯୋଗାଣ ଆଦି ପ୍ରତ୍ୟେକ ବିଷୟରେ ପରାମର୍ଶ ଦେଇ ସାହାଯ୍ୟ ସହଯୋଗ କରିବାକୁ ବ୍ଲକ୍‌ରେ ବିଭିନ୍ନ ବିଷୟରେ ଅଭିଜ୍ଞ କର୍ମଚାରୀ ନିଯୁକ୍ତ ହୋଇଅଛନ୍ତି । ଗ୍ରାମବାସୀଙ୍କ କର୍ମ-ତତ୍ପରତା ଉପରେ ସବୁ ନିର୍ଭର କରେ । ଗ୍ରାମବାସୀମାନଙ୍କୁ କାମ କରିବାକୁ ପଡ଼ିବ । ଯାହା କରିବେ ବ୍ଲକ୍ ନିଶ୍ଚୟ ସାହାଯ୍ୟ କରିବ । ଗ୍ରାମକୁ ଗଢ଼ିବା ଅର୍ଥ ଦେଶକୁ ଗଢ଼ିବା । ଗ୍ରାମର କାର୍ଯ୍ୟରେ ଦେଶର ଉନ୍ନତି ଦେଖିପାରିବା ଏବଂ

ଭକ୍ତିରେ ତନ୍ମୟ ହୋଇ କାମ କରିବାରେ ନିଜକୁ ଭୁଲିଯିବା ହେଉଛି ବିପ୍ଳବ । ସ୍ୱାଧୀନ ଭାରତରେ ବର୍ତ୍ତମାନ ଏହିପରି ବିପ୍ଳବ ସୃଷ୍ଟି କରିବା ଦେଶବାସୀଙ୍କର ଏକମାତ୍ର କର୍ତ୍ତବ୍ୟ, ଏହା ସମସ୍ତଙ୍କର ପ୍ରଣିଧାନର ବିଷୟ ।

## ଦେଶରେ ପଞ୍ଚବାର୍ଷିକ ଯୋଜନା

ଯୋଜନା କରି କାର୍ଯ୍ୟ କରିବା ସାରା ସୃଷ୍ଟିର ନିୟମ । ଯୋଜନା ନ ଥିଲେ ପୃଥିବୀ ଅଚଳ ହୋଇଯିବ । ଦିନ, ରାତି, ଭିନ୍ନ ଭିନ୍ନ ଋତୁ ଏବଂ କେଉଁ ଋତୁରେ ପୃଥିବୀ କେଉଁ ରୂପ ଧାରଣ କରିବ ସବୁ ଯୋଜନା ଅନୁସାରେ ଘଟୁଛି । ଚନ୍ଦ୍ର ସୂର୍ଯ୍ୟ ଯୋଜନା ବଳରେ ଯାତାୟାତ କରୁଛନ୍ତି । ମନୁଷ୍ୟ ଯାହା କରୁଛି ତାହା ସେ ତାର ଆବଶ୍ୟକକୁ ବିଚାରି ଯୋଜନା କରୁଛି । ଭାରତକୁ ସମୃଦ୍ଧିଶାଳୀ କରି ଗଢ଼ିବା, ଅର୍ଥାତ୍ ଭାରତରେ ବାସକରୁଥିବା କୋଟି କୋଟି ନରନାରୀ ବର୍ତ୍ତମାନ ଯେପରି ଦୁଃଖ ଦୁର୍ଦ୍ଦଶା ଭୋଗ କରୁଛନ୍ତି ସେ ସବୁ ଦୂର କରିବା ଏବଂ ଦେଶରେ ସମସ୍ତେ କିପରି ସୁଖରେ ବାସ କରିବେ ତାହା ସ୍ଥିର ବିଚାର କରି ଯୋଜନା କରିବା ଆମର ପ୍ରଧାନ କାର୍ଯ୍ୟ । ମନୁଷ୍ୟର ବହୁତ ଅଭାବ । ଖାଦ୍ୟ, ବସ୍ତ୍ର ଏହି ଦୁଇଟି ପ୍ରଧାନ ଏବଂ ପ୍ରଥମ ଅଭାବ । ଦେଶରେ ଶାସନ ବିଧାନ ବାନ୍ଧି ଶାସନ ପ୍ରଣାଳୀ ପ୍ରଚଳନ କଲା ପରେ ଦେଶର ମୂଳଦୁଆ 'ଗ୍ରାମ'କୁ ଗଢ଼ିବାକୁ ବ୍ଲକ୍ ସ୍ଥାପନ କରାଗଲା । ଖାଦ୍ୟ ବସ୍ତ୍ର ପ୍ରଚୁର ପରିମାଣରେ ଉତ୍ପାଦନ କରିବାକୁ ହେବ, ଏଥିପାଇଁ ପ୍ରଥମ ପଞ୍ଚବାର୍ଷିକ ଯୋଜନା କଳ୍ପନା କରାଯାଇଥିଲା । ଖାଦ୍ୟ ପଦାର୍ଥ ଉତ୍ପାଦନ ପାଇଁ କୃଷିର ଉନ୍ନତି କରିବାକୁ ହେବ ଏବଂ ବସ୍ତ୍ର ଉତ୍ପାଦନ ପାଇଁ ଲୁଗାକଳ ଚଳେଇବାକୁ ପଡ଼ିବ । କୃଷିପାଇଁ ପାଣି

ଏବଂ କଳ ଚଳାଇବା ପାଇଁ ବିଜୁଳି ଶକ୍ତି ଏହି ଦୁଇଟି ନ ହେଲେ ନ ଚଳେ । ବିଜୁଳି ଶକ୍ତି ଦେଶର ପ୍ରାଣବାୟୁ ସଦୃଶ । ତାହାର ଅଭାବରେ ସବୁକାମ ଅଚଳ ହୋଇ ପଡ଼ିବ । ଆଧୁନିକ ଜଗତରେ ବଞ୍ଚି ରହିବାକୁ ହେଲେ ବିଜୁଳି ଶକ୍ତି ଅତିବ ଆବଶ୍ୟକ । ଏହି ଦୁଇଟି ଆବଶ୍ୟକ ପୂରଣ କରିବା ଉଦ୍ଦେଶ୍ୟରେ ପ୍ରଥମ ପଞ୍ଚବାର୍ଷିକ କର୍ମ ଯୋଜନା ପ୍ରସ୍ତୁତ କରାଯାଇଥିଲା । ଏଥିରେ ବାଇଶିଶହ କୋଟି ଟଙ୍କା ଖର୍ଚ୍ଚ ହୋଇଛି । ଓଡ଼ିଶାରେ ମହାନଦୀରେ ହୀରାକୁଦ ବନ୍ଧ ବନ୍ଧା ଯାଇଛି । କେନାଲ ଖୋଳାଯାଇ ଚାଷ ଜମିରେ ପାଣି ମଡ଼ାଇବାର ବ୍ୟବସ୍ଥା ହୋଇଛି ଏବଂ ତହିଁରୁ ବିଜୁଳି ଶକ୍ତି ମଧ୍ୟ ଉତ୍ପାଦନ କରାଯାଉଛି । ଭାରତରେ ହୀରାକୁଦ ବନ୍ଧ ପରି କେତେ ବନ୍ଧ ବାନ୍ଧି ଜମିକୁ ପାଣି ଯୋଗାଇବା ଓ ବିଜୁଳି ଶକ୍ତି ଉତ୍ପାଦନ କରିବା କାମସବୁ ହୋଇଛି । ଯାତାୟାତର ସୁବିଧା କରିବାକୁ ନୂଆ ରାସ୍ତା-ଘାଟ ଓ ପୋଲସବୁ ନିର୍ମାଣ କରାଯାଇଛି । ରେଳ ଡବା ଓ ରେଳ ଇଞ୍ଜିନ ତିଆରି କରିବାକୁ ଚିତ୍ତରଞ୍ଜନ କାରଖାନା ବସିଛି । ସମୁଦ୍ର ଓ ଆକାଶ ପଥରେ ଯାତାୟାତ କରିବା ପାଇଁ ଜାହାଜ ତିଆରି କାରଖାନା ସ୍ଥାପନ କରାଯାଇଛି । ଉଡ଼ା ଜାହାଜ ତିଆରି କରିବାକୁ ମହୀଶୂର ରାଜ୍ୟର ବାଙ୍ଗାଲୋର ସହରରେ ଉଡ଼ାଜାହାଜ ତିଆରି କାରଖାନା ଏବଂ ବିଶାଖାପାଟଣାଠାରେ ସମୁଦ୍ରକୂଳରେ ଜଳ ଜାହାଜ ତିଆରି କାରଖାନା ସ୍ଥାପନ କରି ଉଡ଼ା ଜାହାଜ ଓ ଜଳ ଜାହାଜ ତିଆରି ହେଉଛି । ସାଇକେଲ, ମଟର ଗାଡ଼ି ତିଆରି କାରଖାନା ଖୋଲି ତିଆରି କରାଗଲାଣି । ଏହିପରି ବହୁତ କାମ ଆମ ଦେଶରେ ଯାହା ନ ଥିଲା, ତାହା ସବୁ ଉତ୍ପାଦନ କରିବାର ବ୍ୟବସ୍ଥା ହୋଇଛି । ଚାଷ ପାଇଁ ନଦୀରେ ବନ୍ଧ ବାନ୍ଧି ପାଣି ଯୋଗାଇବା, ଯାତାୟାତର ସୁବିଧା କରିବାକୁ ରାସ୍ତାଘାଟ ବାନ୍ଧିବା

ଏବଂ କଳକାରଖାନା ବସାଇ ଆବଶ୍ୟକ ଜିନିଷ ସବୁ ତିଆରି କରିବା, ବହୁତ ଲୋକଙ୍କୁ ନୂଆ ନୂଆ କାମରେ ଲଗାଇ ଆୟର ପନ୍ଥା ଉଦ୍ଭାବନ କରିବା ଆଦି ବିଷୟ ପ୍ରତି ଦୃଷ୍ଟି ଦେଇ ପ୍ରଥମ ପଞ୍ଚବାର୍ଷିକ କର୍ମ ଯୋଜନା କରାଯାଇଅଛି ।

## ଦେଶବାସୀଙ୍କ ବିଶେଷ କର୍ତ୍ତବ୍ୟ ବିଷୟ

ବିଦେଶୀ ଶାସନରେ ଭାରତ ଛାରଖାର ହୋଇଯାଇଛି । ଭାରତର ଅବସ୍ଥାକୁ ବଦଳାଇବାକୁ ବହୁ ଅର୍ଥ ଏବଂ ବହୁ ସମୟ ଦରକାର । ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବା ଅତି କଠିନ କାମ ଏବଂ ଗୋଟିଏ ବଡ଼ ଦାୟିତ୍ୱ । ଦେଶ ସ୍ୱାଧୀନ ହୋଇଗଲେ ସବୁ କଥା ମନକୁ ହୋଇଯିବ ନାହିଁ । ଦେଶବାସୀ ସମସ୍ତେ ଏହି ଦାୟିତ୍ୱକୁ ଉତ୍ତମରୂପେ ହୃଦୟଙ୍ଗମ କରିବା ଉଚିତ । ତା' ନ ହେଲେ କାମ ସବୁ ଆଶାନୁରୂପ ଫଳପ୍ରଦ ହେବ ନାହିଁ । ଏହା ଧ୍ରୁବ ସତ୍ୟ । ଏହି ସତ୍ୟ ଦେଶର କୋଟି କୋଟି ନରନାରୀ କିପରି ଉପଲବ୍ଧି କରିବେ ଏବଂ ଦେଶାତ୍ମବୋଧ ଶକ୍ତି ସେମାନଙ୍କ ମନ ଓ ହୃଦୟରେ ଅଙ୍କୁରିତ ହେବ, ଏହି କଳ୍ପନାରେ ବ୍ଲକ୍ର କର୍ମଯୋଜନା ପରିକଳ୍ପନା କରାଯାଇଛି । ଦେଶବାସୀ ଏହା ବୁଝି ତତ୍ପର କାର୍ଯ୍ୟ ନ କଲେ, କେବଳ ଦୋଷ ବାଛିବାରେ ଦେଶ ଓଲଟି ଯିବ ନାହିଁ । ସୁତରାଂ ଦେଶ ଅର୍ଥାତ୍ ଦେଶର ମୂଳଦୁଆ 'ଗ୍ରାମ'ରେ ବାସ କରୁଥିବା ନରନାରୀ ନିଜ ନିଜ ଗ୍ରାମକୁ ନୂଆକରି ଗଢ଼ିବାକୁ ଆଗଭର ହେବା ଉଚିତ । କଥାରେ ଅଛି, 'ପିଲା ନ କାନ୍ଦିଲେ ମା ଦୁଧ ଦିଏ ନାହିଁ' । ସେପରି ନିଜ ଗ୍ରାମକୁ ନିଜର ଭାବି ତାହାର ଉନ୍ନତି ସାଧନ କରିବାକୁ ମନ ନ ବଳେଇଲେ ଅନ୍ୟ ଗ୍ରାମରୁ ଲୋକ ଆସି ନିଜ ଗ୍ରାମକୁ ସଜାଡ଼ି ଦେବେ ନାହିଁ । ଦେଶରେ ବିଦେଶୀ ସରକାର ଥିଲା, ଆମ

ଗ୍ରାମକୁ ଗଢ଼ିବାକୁ । ସେତେ ସରକାର ଆମ୍ଭଙ୍କୁ କିଛି ଶିଖେଇ ନାହାନ୍ତି । ଗ୍ରାମର ଭଲମନ୍ଦ କଥା ବିଗ୍ଭରି କାର୍ଯ୍ୟ କରିବାକୁ ବିଦେଶୀ ସରକାରଙ୍କ ମୁଣ୍ଡ ବଥାଇବ କାହିଁକି ? ତେଣୁ ଆମେ ଦୁଃଖ ଭୋଗୁଛେ । କିନ୍ତୁ ବର୍ତ୍ତମାନ ସ୍ୱରାଜ୍ୟ ସରକାର ଆମ ଲୋକ । ଆମ୍ଭେମାନେ ସରକାରକୁ ଗଢ଼ିଛେ । ତେଣୁ ଆମ୍ଭର ଦୁଃଖ ଦୂର କରିବା ପାଇଁ ଆମ ସରକାର କର୍ମ ଯୋଜନା ସବୁ ବାନ୍ଧିଛନ୍ତି । ଆମ୍ଭେମାନେ କିଛି ଭାବିବା ନାହିଁ, କିଛି କରିବା ନାହିଁ, ଖାଲି ବସି ରହି ସବୁବେଳେ ଗ୍ଲେଟ ଗ୍ଲେଟ କଥାରେ କାଳ ଲଗାଇବା । ତେବେ ଗ୍ରାମର ଅବସ୍ଥା ବଦଳିବ କିପରି ? ନିଜର ପରିବାର, ନିଜର ଗ୍ରାମ ତଥା ନିଜର ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବା ପାଇଁ ଯେଉଁ ସବୁ ସୁବିଧା ସୁଯୋଗ ଆମକୁ ମିଳୁଛି ତାହାର ସାହାଯ୍ୟରେ କାର୍ଯ୍ୟ କରିବା ଆମ୍ଭର କର୍ତ୍ତବ୍ୟ । ନିଜର ପରିବାର ଓ ଗ୍ରାମର ଅବସ୍ଥା ବଦଳାଇ ତହିଁରେ ଉନ୍ନତି ସାଧନ କରିପାରିବା ଭଳି ସୁବିଧା ବାଟ ବତାଇ ଦେବାକୁ ବ୍ଲକ୍‌ରେ କର୍ମଚାରୀ ନିଯୁକ୍ତ ହୋଇଛନ୍ତି । ସେମାନଙ୍କ କଥାକୁ ମନଦେଇ ଶୁଣିବା, ସେମାନେ ଯେଉଁ ବାଟ ବତାଉ ଅଛନ୍ତି ସେହିବାଟରେ ଚ୍ଭଲି କାମ କରିବାକୁ ମନ ବଳେଇବା ଉଚିତ । 'ବ୍ଲକ୍ କାହିଁକି ହୋଇଛି', 'କର୍ମଚାରୀମାନେ ଗ୍ରାମରେ କେଉଁ କାମ କିପରି କରିବାକୁ ଇଚ୍ଛା କରୁଛନ୍ତି', ଇତ୍ୟାଦି କଥା ସେମାନଙ୍କ ଠାରୁ ବୁଝି ପଚ୍ଭରି କାର୍ଯ୍ୟ କରିବା ଉଚିତ । ସେମାନେ କିଛି କରୁ ନାହାନ୍ତି କିମ୍ବା କିଛି ଜାଣୁ ନାହାନ୍ତି ବୋଲି କହିଦେଲେ କର୍ତ୍ତବ୍ୟରେ ତ୍ରୁଟି ଘଟିବ ; ଦେଶବାସୀଙ୍କର ଏହା ହିଁ ବିଚ୍ଭରିବାର କଥା ।

## ଲକ୍ଷ୍ମୀଛଡ଼ା ଘରଟି

ଆମ ଦେଶରେ ଧନକୁ ଲକ୍ଷ୍ମୀ କହନ୍ତି । କେହି ଦରିଦ୍ର ହୋଇଗଲେ ତାକୁ ଲକ୍ଷ୍ମୀ ଛାଡ଼ିଗଲେ ବୋଲି ଜନସାଧାରଣଙ୍କର ବିଶ୍ୱାସ ।

ଆମ ଦେଶକୁ ଲକ୍ଷ୍ମୀ ଛାଡ଼ିଛନ୍ତି ବୋଲି ଲକ୍ଷ୍ମୀଛଡ଼ା ଭାରତ କୁହା ଯାଉଛି । ଭାରତର ପ୍ରତି ଘରେ ଲକ୍ଷ୍ମୀ ଦେବୀଙ୍କର ପୂଜା ସ୍ଥାପନ କରାଇବା ଆମ୍ଭର କାର୍ଯ୍ୟ । ଏଥିପାଇଁ ଆଗ ଘର ତୋଳିବା ଦରକାର । କିନ୍ତୁ ଘର ତୋଳିବାକୁ ଗଲେ ନାନା ପ୍ରକାର ଉପକରଣ ଓ ମିସ୍ତ୍ରୀ ସବୁ ଦରକାର । ଉପକରଣ ସଂଗ୍ରହ କରି କାରିଗର ଓ ମିସ୍ତ୍ରୀ ନିଯୁକ୍ତ କଲେ ଘରତୋଳା କାମ ଆରମ୍ଭ ହେବ । ଭାରତ ଗୋଟିଏ ବିଶାଳ ଦେଶ । ଲୋକସଂଖ୍ୟା ଚାଳିଶ କୋଟି । ଚାଳିଶ କୋଟି ଲୋକଙ୍କ ଘରକୁ ତୋଳିବାକୁ ହେବ । ବହୁତ ଉପକରଣ ଓ ମିସ୍ତ୍ରୀ ଦରକାର ହେବେ । ସୁତରାଂ ବର୍ତ୍ତମାନ ଆମ ଦେଶରେ ଯେଉଁସବୁ ପାଞ୍ଚବର୍ଷିଆ କର୍ମ ଯୋଜନା ହୋଇ କାର୍ଯ୍ୟ କରାଯାଉଛି, ସେଥିରେ କେବଳ ଏହି ଉପକରଣ ସଂଗ୍ରହ ଓ ମିସ୍ତ୍ରୀ ତିଆରି କାମ ହେଉଛି । ପୃଥିବୀରେ ଇଂଲଣ୍ଡ, ଆମେରିକା, ରୁଷ୍ ଦେଶପରି ଆମ ଦେଶକୁ ବଡ଼ ଓ ଉନ୍ନତ କରି ଗଢ଼ିବାକୁ ହେବ । ସେମାନେ ବିଜ୍ଞାନ ବଳରେ ବଡ଼ ହୋଇଛନ୍ତି । ସୁତରାଂ ଏହି ଜ୍ଞାନ ବିଜ୍ଞାନର ବଳ ଭାରତ ଅର୍ଜନ କରିବା ଦରକାର । ଏହି ବଳ ପାଇବାକୁ ଗଭୀର ଗବେଷଣା କରିବା ପାଇଁ ଜ୍ଞାନ ବିଜ୍ଞାନ ଗବେଷଣା ମନ୍ଦିର ସ୍ଥାପନ କରାଯାଇଛି । ସୁତରାଂ ବିଜ୍ଞାନ ବଳରେ ଶକ୍ତି ଆହରଣ, ଉପକରଣ ସଂଗ୍ରହ ଉଭୟ କାମ ଚାଲିଛି । ଘର ମୂଳଦୁଆ 'ଗ୍ରାମ'କୁ ଠାଣ ନ କଲେ ଘର ତୋଳା ହେବ କିପରି ? ଏଥିପାଇଁ ବ୍ଲକ୍‌ର କାର୍ଯ୍ୟକ୍ରମ । ସୁତରାଂ ବ୍ଲକ କାମ କେତେ ଗୁରୁତ୍ୱପୂର୍ଣ୍ଣ ଏବଂ ତାହା କେତେ ମହତ୍ କାର୍ଯ୍ୟ ଏକଥା ବୁଝିବାକୁ ଦେଶବାସୀ ମନ ବଳେଇବା ଉଚିତ । ତାହା ନ କରିବା ଦେଶର ଅନିଷ୍ଟ ଓ ବିଦ୍ରୋହାଚରଣ କରିବା ସଙ୍ଗେ ସମାନ ହେବ । ଦେଶ ଓ ଗ୍ରାମକୁ ନିଜର କରି ଦେଖି ନ ପାରିବା ଦୋଷରୁ ବିଦେଶରୁ ବଣିକମାନେ ଆସି ଦେଶର ଶାସନକୁ ଅଧିକାର କରି ବସିଲେ ।

ସେମାନଙ୍କର ଦୁଇଶହ ବର୍ଷର ଶାସନ ଫଳରେ ସୁନାର ଭାରତ ମାଟିରେ ପରିଣତ ହୋଇଛି । ବିଦେଶୀଙ୍କ ହାତରୁ ଆମ ଦେଶର ଶାସନ ଛଡ଼ାଇ ଆଣିବାକୁ ଅସୀମ ଦୁଃଖ କଷ୍ଟ ଭୋଗ କରିବାକୁ ପଡ଼ିଛି । ମୃତସଞ୍ଜୀବନୀ ମନ୍ତ୍ରଦାନ କରି ଜୀବନୀ ଶକ୍ତି ସଞ୍ଚାର କଲାଭଳି ମହାପୁରୁଷ ମହାତ୍ମା ଗାନ୍ଧୀ ମୃତବତ୍ ଭାରତକୁ ନବ ଜୀବନ ଦାନ ଦେଲେ । ତାହାଙ୍କ ମନ୍ତ୍ର ଓ ତପସ୍ୟା ବଳରେ ଭାରତ ବିଦେଶୀଙ୍କ କବଳରୁ ମୁକ୍ତି ପାଇଲା । ମୁକ୍ତିଲାଭ ପରେ ଜଣାପଡ଼ିଲା ଦେଶରେ ଲକ୍ଷ୍ମୀ ନାହାନ୍ତି । ଅର୍ଥାତ୍ ବିଦେଶୀଶାସକ ଗୋଷ୍ଠୀ ଭାରତର ଆର୍ଥିକ ସଙ୍ଗଠନକୁ ଭାଙ୍ଗି ଦେଇଛନ୍ତି । ସେହି ଆର୍ଥିକ ସଂଗଠନକୁ ନୂଆ କରି ଗଢ଼ି ଆମ୍ଭର ଦେଶର ଆଞ୍ଚଳିକ ସମ୍ବଳ ବୃଦ୍ଧି କରିବାକୁ କର୍ମଯୋଜନା ବନ୍ଧାଯାଇ କାର୍ଯ୍ୟ କରାଯାଉଅଛି । ଗ୍ରାମକୁ ଏବଂ ଗ୍ରାମରେ ବାସ କରୁଥିବା ପ୍ରତି ପରିବାରର ଅବସ୍ଥାକୁ ସ୍ୱଚ୍ଛଳ କରି ଗଢ଼ିବାକୁ ହେବ । ତାହା କରିପାରିଲେ ଦେଶର ପ୍ରତି ଗୃହରେ ଲକ୍ଷ୍ମୀ ଦେବୀଙ୍କୁ ସ୍ଥାପନ କରିହେବ । ଏଥିପାଇଁ ଗ୍ରାମକୁ ସବୁ ପ୍ରକାର ସ୍ୱଚ୍ଛଳ ଓ ସମୃଦ୍ଧ କରି ଗଢ଼ିବା ପାଇଁ ବ୍ଲକ୍‌ର କର୍ମଯୋଜନାରେ ବ୍ୟବସ୍ଥା ଅଛି । ଦଶଖଣ୍ଡି ଗ୍ରାମରେ କାମ କରିବାକୁ ଜଣେ ଗ୍ରାମସେବକ ରହିଛନ୍ତି । ବିଭିନ୍ନ ବିଷୟରେ ପାରଦର୍ଶୀ ଅଭିଜ୍ଞ କର୍ମଚାରୀ ରହିଛନ୍ତି । ସେମାନଙ୍କଠାରୁ କାମ ଆଦାୟ କରିବା ଏବଂ ସେମାନଙ୍କ କଥା ଶୁଣି କାର୍ଯ୍ୟ କରିବା ଦେଶବାସୀଙ୍କ ଏକମାତ୍ର କର୍ତ୍ତବ୍ୟ । ପ୍ରତି ପରିବାରକୁ ଏବଂ ଗ୍ରାମକୁ ସମୃଦ୍ଧିଶାଳୀ କରି ଗଢ଼ିବା ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା ବ୍ଲକ୍ କର୍ମଯୋଜନାରେ ରହିଛି । ଗ୍ରାମରେ ବାସକରୁଥିବା ପ୍ରତ୍ୟେକ ନର ନାରୀ ବୁଝି ବିଚାରି ସେହି ସବୁ ବ୍ୟବସ୍ଥାର ସୁଯୋଗ ଗ୍ରହଣ କଲେ ପ୍ରତ୍ୟେକ ଗ୍ରାମର ଏବଂ ଗ୍ରାମର ପ୍ରତ୍ୟେକ ଘରର ରୂପ ବଦଳିଯିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ପ୍ରତି ଗୃହରେ ଲକ୍ଷ୍ମୀ

ଦେବୀଙ୍କୁ ପୁନଃ ସ୍ଥାପନ କରିବାର ଏହା ହିଁ ହେଉଛି ଏକମାତ୍ର ବାଟ । ବାଟରେ ଗଲେ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବା । ଅବାଟରେ ଗତି କରୁଥିବାରୁ ଘୋର ଜଙ୍ଗଲରେ ସମସ୍ତେ ପଶିଛେଁ । ସେଥିରୁ ବାହାରିବାକୁ କାହାରିକୁ ବାଟ ଦେଖାଯାଉ ନାହିଁ । ଦେଶବାସୀ ସମସ୍ତେ ଦେଶକୁ ନଜର ରଖି ବସିରି କାର୍ଯ୍ୟ କଲେ ଅବସ୍ଥା ବଦଳିଯିବ । କାଳ କ୍ଷେପ କଲେ କାହାରି କିଛି ଲାଭ ହେବ ନାହିଁ ।

## ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା

ଦେଶକୁ ଗଢ଼ିବା ପାଇଁ ଉପକରଣ ସଂଗ୍ରହ ହେଉଛି ପ୍ରଧାନ କଥା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ କୃଷିର ଉନ୍ନତି ଓ ଅନ୍ୟାନ୍ୟ କେତେକ ପ୍ରୟୋଜନୀୟ ବିଷୟର ଅଭାବ ପୂରଣ ପାଇଁ କାର୍ଯ୍ୟାରମ୍ଭ କରାଯାଇଛି । ଏହିସବୁ କାମ କରିବାକୁ ଲୁହା ଓ ପେଟ୍ରୋଲ ଆବଶ୍ୟକ । ଏହି ଦୁଇଟି ଜିନିଷର ଅଭାବ ରହିଲେ ଦେଶ ପଙ୍ଗୁ ହୋଇ ପଡ଼ିରହିବ । ଭାରତ ପରି କୃଷିପ୍ରଧାନ ଦେଶରେ ଗୋଟିଏ ଦିନର କାର୍ଯ୍ୟ ମଧ୍ୟ ଅଚଳ ହୋଇଯିବ । ଚାଷ ପାଇଁ କୋଡ଼ି, କାଙ୍କ, କଟୁରି, ଦା', ଲଙ୍ଗଳ ପ୍ରଭୃତି କେତେ ଲୁହାର ଜିନିଷ ଦରକାର । ଆମ ଦେଶରେ ଟାଟା କମ୍ପାନୀ ଲୁହା ଉତ୍ପାଦନ କରୁଛି ସତ୍ୟ ; କିନ୍ତୁ ଭାରତ ଭଳି ଗୋଟିଏ ବିରାଟ ଦେଶର ଆବଶ୍ୟକତାକୁ ବିଚାର କଲେ ଟାଟା କମ୍ପାନୀରେ ଉତ୍ପାଦନ କରାଯାଉଥିବା ଲୁହାର ଜିନିଷ 'ସମୁଦ୍ରକୁ ଶଙ୍ଖେ ପାଣି' ସଦୃଶ । ତହିଁରେ ଆମର ଆବଶ୍ୟକତା ପୂରଣ ହୋଇ ପାରିବ ନାହିଁ । ଲୁହା ଉତ୍ପାଦନ କରିବାର ଉପାଦାନ ଆମଦେଶରେ ଅଭାବ ନାହିଁ । କିନ୍ତୁ ସେ ସବୁର ସଦ୍‌ବ୍ୟବହାର କରି ଲୁହା ଉତ୍ପାଦନ ବୃଦ୍ଧି କରିବାକୁ ଦେଶର ସ୍ୱଦେଶୀ ସରକାର ମନ ଦେଇନାହାନ୍ତି । ଲୁହାର ଉତ୍ପାଦନ ବୃଦ୍ଧି

କରି ନ ପାରିଲେ ସବୁ ଗଠନ କାର୍ଯ୍ୟ ଅଚଳ ହୋଇ ଯାଉଛି । ତେଣୁ ଦ୍ୱିତୀୟ ପଞ୍ଚବର୍ଷିକ ଯୋଜନାରେ ଲୌହ ନଗର ନିର୍ମାଣ କରି ଲୁହା ଉତ୍ପାଦନ କରିବାର ତିନୋଟି ବୃହତ୍ କାରଖାନା ସ୍ଥାପନ କରାଯାଇଛି । ସେଥିମଧ୍ୟରୁ ରାଉରକେଲା ନାମକ କାରଖାନା ଆମ ଓଡ଼ିଶାରେ ବସିଛି । ବଙ୍ଗଳାର ଦୁର୍ଗାପୁର, ମଧ୍ୟ ପ୍ରଦେଶର ଭିଲାଇରେ ଲୁହାକାରଖାନା ସ୍ଥାପନ କରାଯାଇଛି । ଟାଟାକମ୍ପାନୀକୁ ଆହୁରି ବଡ଼ କରି ଦିଆଯାଇଛି, ଅଧିକ ଲୁହା ଜିନିଷ ଉତ୍ପାଦନ କରିବାକୁ । ପେଟ୍ରୋଲ ମାଟି ଭିତରୁ ବାହାର କରିବାକୁ ହେବ । ସେଥିପାଇଁ ଅନୁସନ୍ଧାନ ଚାଲିଛି । ଆସାମରେ ପେଟ୍ରୋଲର ସନ୍ଧାନ ମିଳିଛି । ପେଟ୍ରୋଲ ଖଣିରୁ ବାହାର କରି ସଂଶୋଧନ କରିବାକୁ କାରଖାନା ବସିଛି । ଗୁଜରାଟ ପ୍ରଦେଶର କାମ୍ବେଠାରେ ଏବେ ପ୍ରଚୁର ପେଟ୍ରୋଲ ଖଣିର ସନ୍ଧାନ ମିଳିବାରୁ ତହିଁରୁ ତେଲ ବାହାର କରିବାକୁ ଅଦମ୍ୟ ଚେଷ୍ଟା ଚାଲିଛି । ପୃଥିବୀ ତଳେରେ ବହୁ ମୂଲ୍ୟବାନ ଖନିଜ ପଦାର୍ଥ ପୂରି ରହିଛି । ଭାରତ ଭୂମିରେ କେଉଁଠାରେ କ'ଣ ଧାତୁ ଦ୍ରବ୍ୟ ରହିଛି ତାହା ଆବିଷ୍କାର କରିବାକୁ ଅନବରତ ଅନୁସନ୍ଧାନ କରି ପରୀକ୍ଷା କରାଯାଉଛି । ଏହି ସବୁ କାମ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାଦ୍ୱାରା କରାଯିବାର ବ୍ୟବସ୍ଥା କରାଯାଇଛି । ଏହି ଯୋଜନାରେ ପାଞ୍ଚହଜାର ପାଞ୍ଚଶହକୋଟି ଟଙ୍କା ଖର୍ଚ୍ଚ ହୋଇଛି । ୧୯୬୧ମସିହା ଶେଷ ହେବା ପୂର୍ବରୁ ଏହି ଦ୍ୱିତୀୟ ଯୋଜନା କାର୍ଯ୍ୟ ଶେଷ ହେବ । ତୃତୀୟ ପଞ୍ଚବାର୍ଷିକ ଯୋଜନା ପାଇଁ ଅଟକଳ ଖର୍ଚ୍ଚର ପରିମାଣ ପ୍ରକାଶ ପାଇ ସାରିଲାଣି । ପାର୍ଲିଆମେଣ୍ଟ ବହୁ ଆଲୋଚନା ଓ ବିଚାର କରି ଏହି ତୃତୀୟ ଯୋଜନାକୁ ଗ୍ରହଣ କରି ସାରିଲାଣି । ଏଥିରେ ଦଶହଜାର ଦୁଇଶହ କୋଟି ଟଙ୍କା ଖର୍ଚ୍ଚ ହେବ । ଏହି ତୃତୀୟ ପଞ୍ଚବାର୍ଷିକ ଯୋଜନାଦ୍ୱାରା ବୃହତ୍ ଶିଳ୍ପ ଅନୁଷ୍ଠାନ ସବୁ ସ୍ଥାପନ କରାଯିବ ।

## ତୃତୀୟ ଯୋଜନା ମୂଳଦୁଆକୁ ଟାଣ କରିବ

ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବାକୁ ହେଲେ ଦେଶର ଯାବତୀୟ ପ୍ରୟୋଜନୀୟ ଜିନିଷ ସବୁ ଦେଶରେ ଉତ୍ପାଦନ କରିବାକୁ ପଡ଼ିବ । ଦେଶରେ ଭିନ୍ନ ଭିନ୍ନ କଳ କାରଖାନା ନ ବସାଇଲେ ଜନସାଧାରଣଙ୍କର ଆବଶ୍ୟକୀୟ ଜିନିଷ ଯୋଗାଇ ହେବ ନାହିଁ ଏବଂ ଦେଶର ବେକାର ସମସ୍ୟା ସମାଧାନ କରିବା କଷ୍ଟକର ହୋଇ ପଡ଼ିବ । ଏଥିପାଇଁ ଦେଶରେ କଳ କାରଖାନା ସଂଖ୍ୟା ବୃଦ୍ଧି ପାଇଛି ଓ ପାଇବ । କିନ୍ତୁ ଏହି କାରଖାନା ସବୁ ସ୍ଥାପନ କରିବାକୁ ଯେଉଁ କଳ କବଜା ଦରକାର ପଡ଼ୁଛି, ସେ ସବୁ ବିଦେଶରୁ ଆମଦାନୀ କରାଯାଉଛି । ଏହାଦ୍ୱାରା ଦେଶର ଅଜସ୍ର ଧନ ଆମ ଦେଶରୁ ବିଦେଶକୁ ବୁହା ହୋଇ ଯାଉଛି । ଏହାର ଗତି ବନ୍ଦ କରିବାକୁ ହେଲେ ସମସ୍ତ ପ୍ରକାର ପ୍ରୟୋଜନୀୟ କଳ କବଜା ଆମ ଦେଶରେ ଉତ୍ପାଦନ କରିବାକୁ ହେବ । ଏହା କରିବାକୁ ବୃହତ୍ ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା ହେବା ଉଚିତ ।

ଦେଶକୁ ଗଢ଼ିବା ଅର୍ଥ ଦେଶରେ ବାସ କରୁଥିବା କୋଟି କୋଟି ନରନାରୀଙ୍କୁ ଜାଗ୍ରତ କରାଇ ସେମାନଙ୍କୁ କାମରେ ଲଗାଇବା । ପ୍ରତ୍ୟେକ ବ୍ୟକ୍ତି ବଞ୍ଚି ରହିବାକୁ ଇଚ୍ଛାକରେ । କିନ୍ତୁ ନିଜେ ବଞ୍ଚିବାକୁ ଇଚ୍ଛୁକଲେ, ଅନ୍ୟକୁ ବଞ୍ଚିବାକୁ ସୁବିଧା ନ ଦେଲେ ସେ ବଞ୍ଚି ରହିପାରିବ ନାହିଁ । ସୁତରାଂ ନିଜେ ବଞ୍ଚିବ ଏବଂ ଅନ୍ୟକୁ ବଞ୍ଚିବାକୁ ଦେବ । ଏହାର ଅର୍ଥ ସମସ୍ତେ କିପରି ସୁବିଧାରେ ଚଳିବେ । ଏହି ଲକ୍ଷ୍ୟ ଓ ଆଦର୍ଶକୁ ସମ୍ମୁଖରେ ରଖି ଆମ୍ଭ ଦେଶର ପୁନର୍ଗଠନ କାର୍ଯ୍ୟ ଆରମ୍ଭ କରାଯାଇଛି । ଦେଶର ଯାବତୀୟ ଅଭାବ ଅସୁବିଧା ଦୂର କରିବାକୁ ଯୋଜନାମାନ ଗଢ଼ାଯାଇଅଛି । ଦେଶର ଅଧିକାଂଶ

ନରନାରୀ ନିଜର ସୁଖ ସମୃଦ୍ଧି ଲାଭ କରିବାକୁ ଯଦି କୌଣସି ସୁବିଧା ସୁଯୋଗ ଲାଭ କରି ନ ପାରନ୍ତି, ତେବେ ସେପରି ଯୋଜନାର କୌଣସି ମୂଲ୍ୟ ରହେ ନାହିଁ । ସୁତରାଂ ଧନ ଆପ୍ତିର ପଥ ସମସ୍ତଙ୍କ ପାଇଁ ଓ ସହଜ ସରଳ କରିବାକୁ ହେବ ଏବଂ କେହି 'କିଛି କାମ ଧନ୍ଦା ପାଇ ପାରିଲୁ ନାହିଁ' ବୋଲି କହିବାକୁ ନ ଥିବ । ଆମ୍ଭର ପଞ୍ଚବାର୍ଷିକ ଯୋଜନା ସବୁ ସେହିପରି ଲକ୍ଷ୍ୟ ରଖି ଗଢ଼ାଯାଇଛି । ଦେଶର ମୌଳିକ ଅଭାବ ପୂରଣ ନ ହେଲେ ଅଭାବ ଅନାଟନ ଲାଗି ରହିଥିବ ଏବଂ ଲୋକେ ଅକର୍ମା ହୋଇ ବୁଲୁଥିବେ । ସୁତରାଂ ଏହି ମୌଳିକ ଅଭାବ କ'ଣ ଏବଂ ତାହା ଦୂର କରିବାକୁ ପ୍ରଥମ ଓ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ କରାଯାଇଥିବା କାର୍ଯ୍ୟସବୁର ଆଭାସ ମାତ୍ର ଦିଆଯାଇଛି । ସେ ସବୁର ବିଷଦ ବିବରଣୀ ଏଠାରେ ଉଲ୍ଲେଖ କରିବା ପ୍ରୟୋଜନ ବୋଧ କରୁନାହିଁ । ବର୍ତ୍ତମାନ ଆମ୍ଭର ତୃତୀୟ ପଞ୍ଚବାର୍ଷିକ ଯୋଜନାରେ ଯେଉଁ ବୃହତ୍ ଶିଳ୍ପ ଅନୁଷ୍ଠାନ ଗଢ଼ିବାର କଳ୍ପନା କରାଯାଇଛି, ତଦ୍ୱାରା ଦେଶର କିପରି ସମୃଦ୍ଧି ବଢ଼ିବ ସେ ବିଷୟରେ ଟିକିଏ ଉଲ୍ଲେଖ ନ କଲେ ଗ୍ରାମର ସମୃଦ୍ଧ ଯୋଜନାକୁ କିପରି ତାହା ସାହାଯ୍ୟ କରିବ, ତାହା ବୁଝାଇ ହେବ ନାହିଁ ।

ଦେଶରେ ବୃହତ୍ ଶିଳ୍ପ ପ୍ରତିଷ୍ଠା ହେଲେ ସେଥିରେ ଯେ କୌଣସି କାରଖାନା ପ୍ରତିଷ୍ଠା କରିବା ସହଜ ହେବ । ଆମ୍ଭ ଦେଶର ଗବେଷଣା ମନ୍ଦିରରେ ବୈଜ୍ଞାନିକମାନେ ନୂତନ ନୂତନ ତଥ୍ୟ ଆବିଷ୍କାର କରିବାକୁ ଗବେଷଣା କରୁଛନ୍ତି । ଦେଶରେ କୁଟୀରଶିଳ୍ପର ଉନ୍ନତି କରିବାକୁ ସେମାନେ କୌଣସି ପ୍ରକାର ଯନ୍ତ୍ର ତିଆରି କରିବାର ସୂତ୍ର ଆବିଷ୍କାର କରିବେ । ଇଂଲଣ୍ଡ, ଆମେରିକା ବୈଜ୍ଞାନିକମାନଙ୍କଦ୍ୱାରା ଆବିଷ୍କୃତ କଳକାରଖାନା ବସାଇ

ବଳବଶାଳୀ ହୋଇଛନ୍ତି । ସେଥିପାଇଁ ଆମ୍ଭର ବୃହତ୍ ଶିଳ୍ପ କାରଖାନା ଗଢ଼ାଯାଉଛି, ବିଜ୍ଞାନର ଗବେଷଣା ଚାଲିଛି । ବର୍ତ୍ତମାନ ବିଜ୍ଞାନର ଯୁଗ । ବିଜ୍ଞାନର ଜ୍ଞାନଦ୍ୱାରା କେତେ ଅଶ୍ରୁତପୂର୍ବ ଓ ଅତି ଆଶ୍ଚର୍ଯ୍ୟ ଧରଣର ଉପାଦାନ ସବୁ ଆବିଷ୍କୃତ ହୋଇ ମନୁଷ୍ୟର ଜୀବନ ନିର୍ବାହ ପନ୍ଥାକୁ ସୁଖମୟ କରିଅଛି । ଆମ୍ଭ ଦେଶରେ ସେ ସବୁ ଶୂନ୍ୟ । କିନ୍ତୁ ସ୍ୱାଧୀନ ଭାରତ ଆଉ ସେପରି ଶୂନ୍ୟ ହୋଇ ରହି ପାରିବ ନାହିଁ । ଭାରତର କୋଟି କୋଟି ନରନାରୀ ଯେପରି ସୁଖ ସ୍ୱାଚ୍ଛନ୍ଦ୍ୟରେ ବସବାସ କରି ପାରିବେ, ସେହି ଉଦ୍ଦେଶ୍ୟରେ ପଞ୍ଚବାର୍ଷିକ ଯୋଜନା ସବୁ ଗଢ଼ାଯାଇ କାମ କରାଯାଇଛି ଓ କରାଯାଉଛି । ଯୋଜନାର କାର୍ଯ୍ୟ ସମାପ୍ତ ହୋଇଗଲେ ଭାରତ ନିଜ ଗୋଡ଼ରେ ଠିଆ ହେବାକୁ ଶକ୍ତି ଲାଭକରିବ । ଭାରତ ତଳେ ପଡ଼ିଛି, ଠିଆ ହେବାକୁ ଶକ୍ତି ନାହିଁ । ଠିଆ ହୋଇ ପାରିଲେ ସିନା ଧାଇଁ ଚାଲିବ ! ତୃତୀୟ ପଞ୍ଚବାର୍ଷିକ ଯୋଜନା ପରେ ଗୋଟିକ ପରେ ଗୋଟିଏ ହୋଇ କେତେ ପଞ୍ଚବାର୍ଷିକ ଯୋଜନା ଦେଶରେ କାର୍ଯ୍ୟକାରୀ କରାଯିବ । ସେଥିପାଇଁ ସମୟ ଦରକାର ।

## ବ୍ଲକ କାର୍ଯ୍ୟ ଭାରତକୁ ଠିଆହେବାକୁ ବଳ ଦେବ

ମନୁଷ୍ୟର ଗୋଟିଏ ଅଙ୍ଗ ଦୁର୍ବଳ କିମ୍ବା ବ୍ୟାଧିଗ୍ରସ୍ତ ହେଲେ ସବଳ ମନୁଷ୍ୟ ବୋଲି ତାକୁ କୁହାଯାଇ ପାରିବ ନାହିଁ । ମନୁଷ୍ୟ ଶରୀରରେ ଅଙ୍ଗ ପ୍ରତ୍ୟଙ୍ଗ ପରି ଦେଶର ମଧ୍ୟ ଅଙ୍ଗ ପ୍ରତ୍ୟଙ୍ଗ ଅଛି । ପଲ୍ଲୀଗ୍ରାମ ଦେଶର ବିଶିଷ୍ଟ ଅଙ୍ଗ ସ୍ୱରୂପ । ପଲ୍ଲୀଗ୍ରାମ ଦୁର୍ବଳ ରହିଲେ ଦେଶ ସବଳ ହୋଇ ଠିଆହୋଇ ପାରିବନାହିଁ । ଦେଶର ମୌଳିକ ଅଭାବ ପୂରଣ କରିବାକୁ ପଞ୍ଚବାର୍ଷିକ ଯୋଜନା କରାଗଲା । ତଦ୍ଦ୍ୱାରା ଗ୍ରାମର ମୌଳିକ ଅଭାବ ପୂରଣ ହୋଇ ପାରିବାର ଆଶା । ଗ୍ରାମର

ଆର୍ଥିକ ଉନ୍ନତି ସାଧନ କରିପାରିବା ଭଳି ସହଜସାଧ୍ୟ ଉପକରଣ ଲୋଡ଼ା । ଭାରତକୁ ଗଢ଼ିବାକୁ ଆମ୍ଭେମାନେ ମନ ଦେଇଛେ । ଭାରତ ଜଗତର ଗୋଟିଏ ବଡ଼ ଦେଶ ଓ ବଡ଼ ଜାତି ହୋଇ ଠିଆ ହେବ, ପୃଥିବୀର ଦୁଃଖ ସୁଖ ସମସ୍ୟା ସମାଧାନ କରିବାରେ ଅନ୍ୟାନ୍ୟ ଉନ୍ନତ ଦେଶ ଓ ଜାତିମାନଙ୍କ ସହିତ ସମାନ ଆସନରେ ବସି ପାରିବ ଏବଂ ପୃଥିବୀରେ ଉଚ୍ଚ ଆସନ ଓ ସମ୍ମାନ ଲାଭ କରିପାରିବ, ଦେଶର ସାମାଜିକ ଗଠନ ଓ ତନ୍ତ୍ରରେ ନ୍ୟାୟ ଅନ୍ୟାୟର ବିଚାର ସମସ୍ତଙ୍କର ଆର୍ଥିକ, ରାଜନୈତିକ ଓ ସାଂସ୍କୃତିକ ଅବସ୍ଥା ଅବା ଆସନ ଆମଦେଶର ସ୍ୱରୂପକୁ ପ୍ରକାଶ କରିବ, ସମାଜରେ ଧନୀ ଦରିଦ୍ର ମଧ୍ୟରେ ତାରତମ୍ୟ ଅଧିକ ରହିବ ନାହିଁ, ଶିକ୍ଷା ଲାଭର ସୁବିଧା ସମସ୍ତେ ସହଜରେ ପାଇପାରୁଥିବେ, ରୋଗବ୍ୟାଧିର ଚିକିତ୍ସା କରିବାପାଇଁ ସମାନ ସୁବିଧା ସମସ୍ତଙ୍କର ରହିଥିବ, ଜାତି, ଧର୍ମ କିମ୍ବା କ୍ଷମତାର ଦୃଷ୍ଟିରେ ଜଣେ ଅପରଠାରୁ ଉଚ୍ଚ ବୋଲି ଭାବିପାରୁ ନ ଥିବ, ଏହା ହିଁ ହେଲା ଜାତି ତଥା ଦେଶର ମହତ୍ତ୍ୱ ଓ ଉଚ୍ଚ ଆଦର୍ଶ । ଏହିପରି ଦୃଷ୍ଟିରେ ଭାରତକୁ ଗଢ଼ି ପାରିଲେ ଭାରତ ପୃଥିବୀରେ ସୁନାମ ଅର୍ଜନ କରି ପାରିବ । ସଭ୍ୟ ଅଥବା ଉନ୍ନତ ମାନବ ସମାଜର ନିଦର୍ଶନ ଏହିପରି ସାମାଜିକ ବ୍ୟବସ୍ଥାରୁ ଜଣା-ପଡ଼ିବାର କଥା ।

ଦେଶର ମୂଳଦୁଆ ସ୍ୱରୂପ ଗ୍ରାମକୁ ଗଢ଼ିବାକୁ ହେଲେ ତାହାର ଆମୂଳଚୂଳ ପରିବର୍ତ୍ତନ କରିବା ନିତାନ୍ତ ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ଗ୍ରାମର ସମୂହ ଉନ୍ନତିମୂଳକ କାର୍ଯ୍ୟ କରିବାକୁ ଯୋଜନା କରାଯାଇ ବ୍ଲକ ସ୍ଥାପନ କରାଯାଇଛି । ଗ୍ରାମବାସୀମାନେ ବ୍ଲକ କାର୍ଯ୍ୟର ମହତ୍ତ୍ୱ ଓ ଲକ୍ଷ୍ୟ କ'ଣ ତାହା ବୁଝିବା ଦରକାର । ଏହି କାର୍ଯ୍ୟ କିପରି ଆମର ଉଦ୍ଦେଶ୍ୟ ସାଧନ କରିପାରିବ, ଏହା ହିଁ

ବଡ଼ ସମସ୍ୟା । କେବଳ ସରକାରୀ କର୍ମଚାରୀମାନଙ୍କ ଉପରେ ନିର୍ଭର କଲେ ଫଳ ମିଳିବ ନାହିଁ । ଦେଶର ଶିକ୍ଷିତ, ଅଶିକ୍ଷିତ, ସମସ୍ତଙ୍କ ଦୃଷ୍ଟି ବ୍ଲକ୍ କାର୍ଯ୍ୟ ପ୍ରତି ଆକୃଷ୍ଟ ହେବା ଉଚିତ । ଦେଶ ସେବା ନାମରେ ଯେତେ ଅନୁଷ୍ଠାନ ଏବଂ ଯେତେ ଦଳ ସୃଷ୍ଟି ହୋଇଛି, ସେ ସବୁର କର୍ମୀଗଣ ଏବଂ ବିଧାନ ସଭା ଓ ପାର୍ଲିୟାମେଣ୍ଟର ସଭ୍ୟ ସମସ୍ତେ ଗ୍ରାମର ଆମୂଳଚୂଳ ପରିବର୍ତ୍ତନ ଘଟାଇବାକୁ ପରିକଳ୍ପିତ ବ୍ଲକ୍‌ର କର୍ମଯୋଜନାକୁ ସାହାଯ୍ୟ ସହଯୋଗ କରିବା ବିଧେୟ । ଦେଶବାସୀଙ୍କ ସମ୍ମୁଖରେ ଏହା ଗୋଟିଏ ବଡ଼ ଦାୟିତ୍ୱ । ଏହି ଦାୟିତ୍ୱରେ ଅବହେଳା କରିବାଦ୍ୱାରା ଦେଶର ବିଦ୍ରୋହାଚରଣ କରାଯାଇଛି ଏବଂ ଦେଶର ସମୃଦ୍ଧ ଉନ୍ନତିକର ଯୋଜନାରେ ବାଧା ସୃଷ୍ଟି କରାଯାଇଅଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଭାରତର ସମୃଦ୍ଧ ଉନ୍ନତିକର ଯୋଜନାର ଅର୍ଥ ଭାରତର ଚାଳିଶ କୋଟି ନରନାରୀଙ୍କ ଜୀବନ୍ମୃତ ସମସ୍ୟା ।

ବ୍ଲକର କୌଣସି ଅଜଣା ଅଶୁଣା ଗ୍ରାମରେ ବସି କାମକରିବା ଭାରତର ସମୃଦ୍ଧ ଉନ୍ନତିମୂଳକ କାମ କରିବା ସଙ୍ଗେ ସମାନ । ଭାରତର ପ୍ରତ୍ୟେକ ଗ୍ରାମ, ପ୍ରତ୍ୟେକ ପରିବାର ଏବଂ ପରିବାରର ପ୍ରତ୍ୟେକ ବ୍ୟକ୍ତି କିପରି ଉନ୍ନତି କରିବ ତାହା ହେଲା ଯୋଜନାର ଲକ୍ଷ୍ୟ ଏବଂ ବ୍ଲକର ପ୍ରଧାନ ବିଚାର୍ଯ୍ୟ ବିଷୟ । ସାମାନ୍ୟ ପବନରେ ଅଶ୍ୱତ୍ଥ ବୃକ୍ଷର ପ୍ରତ୍ୟେକ ପତ୍ର ଥରି ଉଠିଲା ପରି ଗ୍ରାମର ସମୃଦ୍ଧ ଉନ୍ନତିମୂଳକ ଯୋଜନାକୁ କାର୍ଯ୍ୟକାରୀ କରିବା ଦ୍ୱାରା ପଲ୍ଲୀଜୀବନକୁ ଗଠନ କରୁଥିବା ପ୍ରତ୍ୟେକ ଉପାଦାନ ଥରି ଉଠିବ । ଏହିପରି କାର୍ଯ୍ୟଦ୍ୱାରା ଦେଶର ମୂଳଦୁଆ ଠାଣ ହେବ ଏବଂ ଭାରତ ପୃଥିବୀରେ ସୁନାମ ଅର୍ଜନକରି ଉଚ୍ଚ ଆସନ ଲାଭ କରିପାରିବ ।

## ବ୍ଲକ୍ କହିଲେ କଣ ବୁଝାଏ

ଦେଶରେ ସରକାରଙ୍କ କାର୍ଯ୍ୟ ବିଭିନ୍ନ ବିଭାଗରେ ବଣ୍ଟାଯାଇ କାର୍ଯ୍ୟ ହେଉଛି । କିନ୍ତୁ ବ୍ଲକ୍ ସ୍ଥାପନ କଲା ପରେ ବିଭିନ୍ନ ବିଭାଗର କାର୍ଯ୍ୟସବୁ ବ୍ଲକ୍ କର୍ମଚାରୀମାନଙ୍କ ଦ୍ୱାରା କରାଯାଏ । ଏଣୁ ବ୍ଲକ୍‌ରେ ବିଭିନ୍ନ ବିଭାଗର କାମ ଜାଣିଥିବା କର୍ମଚାରୀ ନିଯୁକ୍ତ ହୁଅନ୍ତି । କୃଷି, ଗୋପାଳନ, ଶିକ୍ଷା, ସ୍ୱାସ୍ଥ୍ୟ, ସମବାୟ ଓ ପୂର୍ତ୍ତବିଭାଗ ଇତ୍ୟାଦି କାର୍ଯ୍ୟର ଅଭିଜ୍ଞତା ଲାଭ କରିଥିବା କର୍ମଚାରୀ ଗ୍ରାମଗୋଷ୍ଠୀ ଯୋଜନାକୁ କାର୍ଯ୍ୟକାରୀ କରିବାକୁ ନିଯୁକ୍ତ ହୋଇଛନ୍ତି । ଗ୍ରାମବାସୀ-ମାନଙ୍କ ମଧ୍ୟରେ ସାଧାରଣ ଜ୍ଞାନ ପ୍ରଚାର କରିବା ପାଇଁ ସାମାଜିକ ଶିକ୍ଷାଦାତା ନାମକ ଜଣେ ଉଚ୍ଚଶିକ୍ଷିତ କର୍ମଚାରୀ ନିଯୁକ୍ତ ହୋଇଛନ୍ତି । ସମସ୍ତ କର୍ମଚାରୀମାନଙ୍କୁ ପରିଚାଳନା କରିବାକୁ ବ୍ଲକ୍ ଅଫିସର ନାମକ ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଅଛନ୍ତି । ବ୍ଲକ୍ କର୍ମଯୋଜନା ବିଷୟରେ ତାହାଙ୍କୁ ତାଲିମ କରାଯାଇଛି । ତାଲିମପ୍ରାପ୍ତ ଗ୍ରାମସେବକ ଓ ସେବିକା ରହୁଛନ୍ତି । ବ୍ଲକ୍‌ର କାର୍ଯ୍ୟକ୍ରମ ବର୍ତ୍ତମାନ ଦଶବର୍ଷ ପାଇଁ ସ୍ଥିର କରାଯାଇଅଛି । ପରେ ଏହା ଗୋଟିଏ ଚିରସ୍ଥାୟୀ ସଙ୍ଗଠନରେ ପରିଣତ ହେବାର ସମ୍ଭାବନା ରହିଛି । ବର୍ତ୍ତମାନ ଏହି ଦଶବର୍ଷର କାମକୁ ପାଞ୍ଚବର୍ଷ କରି ଦୁଇ ଭାଗରେ ବିଭକ୍ତ କରାଯାଇଛି ।

## ବ୍ଲକ୍‌ର ଉଦ୍ଦେଶ୍ୟ ଦେଶର ଉନ୍ନତି ସାଧନ

ପୃଥିବୀରେ ଯେଉଁ ଦେଶ ସବୁ ଉନ୍ନତିଲାଭ କରିଛନ୍ତି ସେମାନେ କେବଳ ନିଜର ପରିଶ୍ରମ ବଳରେ ଉନ୍ନତ ହୋଇଛନ୍ତି । ଦେଶର ନରନାରୀ ଯେପରି ଦୃଷ୍ଟିରେ ଦେଶର ପରିସ୍ଥିତି ଓ ସମସ୍ୟାକୁ ଦେଖିବେ ଏବଂ ବିଚାର କରିବେ ତଦନୁସାରେ କାର୍ଯ୍ୟ କରିବେ । ଦେଶର କାର୍ଯ୍ୟ ପ୍ରତି ଦେଶବାସୀଙ୍କ ମନ ଓ ହୃଦୟରେ

ଆବେଗ ଓ ଉଦ୍‌ବେଗ ଯେଉଁ ପରିମାଣରେ ଜାତ ହେବ ଦେଶର ସମସ୍ୟାମାନ ସମାଧାନ କରିବାକୁ ସେତିକ ସହଜ ଓ ସରଳ ହେବ । ଆମ୍ଭେମାନେ ନୂତନ ଭାରତ ଗଠନ କରିବାକୁ ଗ୍ରାମକୁ ମୂଳଦୁଆ କରି ଗଢ଼ିବାପାଇଁ ବ୍ଲକ ସ୍ଥାପନ କଲେ । ସେଥିରେ କାମ କରିବାକୁ ଯଥୋପଯୋଗୀ ଅଭିଜ୍ଞ କର୍ମକର୍ତ୍ତା ନିଯୁକ୍ତ ହେଲେ । ଗ୍ରାମବାସୀମାନେ ବ୍ଲକ୍ କାର୍ଯ୍ୟର ଉଦ୍ଦେଶ୍ୟ ଓ ମହତ୍ତ୍ୱକୁ ଉପଲବ୍ଧି କରି କାର୍ଯ୍ୟରେ ଅନୁପ୍ରାଣିତ ନ ହେଲେ କେବଳ କର୍ମଚାରୀମାନେ ଗ୍ରାମର ସମୂହ ଉନ୍ନତିମୂଳକ କର୍ମଯୋଜନାକୁ କାର୍ଯ୍ୟକାରୀ କରାଇବା ଅସମ୍ଭବ । ଏହି କର୍ମଯୋଜନାର ମୂଳ ମନ୍ତ୍ର ହେଲା, ଗ୍ରାମବାସୀମାନେ ସାହାଯ୍ୟ କରି ନିଜକୁ ଏବଂ ଗ୍ରାମକୁ ଗଠନ କରିବାକୁ ଉଦ୍ୟମ କରିବେ ; ଗ୍ରାମର ସମୂହ ଉନ୍ନତିମୂଳକ ଅନୁଷ୍ଠାନ ସବୁ ଗଢ଼ିବେ ; ଆପଣା ଭିତରୁ ଜଣେ ପରିଚାଳକ ବାଛିବେ, ସମସ୍ତଙ୍କୁ ବାଟରେ ଆଗେଇ ନେବାକୁ । ଏହା କରିପାରିଲେ ଗ୍ରାମ-ଜୀବନକୁ ପ୍ରଭାବିତ କରୁଥିବା ପ୍ରତ୍ୟେକ ଅଭାବ ପୂରଣ କରାଯାଇ ପାରିବ । କୃଷିର ଉନ୍ନତି, ଅଧିକ ଆୟର ପନ୍ଥା ଅବଲମ୍ବନ—ଶିକ୍ଷା, ସ୍ୱାସ୍ଥ୍ୟ ଆଦି ପ୍ରତ୍ୟେକ ସମସ୍ୟାର ସମାଧାନ କରି ପାରିଲେ—ଗ୍ରାମରେ ଲୋକେ ସୁଖ ଓ ଆନନ୍ଦରେ ଜୀବନକୁ ଉନ୍ନତ କରି ଗଢ଼ି ପାରିବେ । ଏହି ସବୁ କାର୍ଯ୍ୟରେ ସାହାଯ୍ୟ ସହଯୋଗ କରି ବାଟ ଦେଖାଇବାକୁ ବ୍ଲକ୍ କର୍ମଚାରୀ ଅଛନ୍ତି । ଗ୍ରାମବାସୀଙ୍କ ବିଚାର ଓ ବୁଦ୍ଧିର ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ଏହା ନ ହେଲେ କୌଣସି କଥା କାର୍ଯ୍ୟରେ ପରିଣତ କରିବା ସହଜ ହେବ ନାହିଁ ।

## ବ୍ଲକ୍ କାର୍ଯ୍ୟ କିପରି ଆରମ୍ଭ କରାଯିବ

ବ୍ଲକ୍ କାର୍ଯ୍ୟକ୍ରମ ଦୁଇଭାଗରେ ବିଭକ୍ତ କରି ପ୍ରତି ଭାଗର କାର୍ଯ୍ୟ ସମ୍ପାଦନ କରିବାକୁ ପାଞ୍ଚବର୍ଷ ସମୟ ନିର୍ଦ୍ଧାର୍ଯ୍ୟ ହୋଇଛି ।

ପ୍ରଥମ ପାଞ୍ଚବର୍ଷରୁ ପ୍ରଥମ ବର୍ଷଟି ଯିବ ବ୍ଲକରେ ଥିବା ଗ୍ରାମସମୂହର ଅବସ୍ଥା ଅନୁସନ୍ଧାନ କରିବା ଏବଂ ଅବସ୍ଥାକୁ ଦେଖି କର୍ମର ବ୍ୟବସ୍ଥା କରିବାରେ । ଗ୍ରାମର ଅବସ୍ଥା କହିଲେ ଗ୍ରାମର ଆୟତନ ଓ କୃଷିଜମିର ପରିମାଣ, ତହିଁରେ ଉର୍ବର ଓ ଅନୁର୍ବର ଜମିର ହିସାବ, ଗ୍ରାମର ଲୋକ-ସଂଖ୍ୟା—ପୁରୁଷ, ସ୍ତ୍ରୀ, ବାଳକ, ବାଳିକାଙ୍କ ସଂଖ୍ୟା ଗ୍ରାମରେ ଉତ୍ପନ୍ନ ହେଉଥିବା ବିଭିନ୍ନ ଫସଲ ଓ ତହିଁର ପରିମାଣ, ଗ୍ରାମବାସୀଙ୍କର ଆୟର ପନ୍ଥା, ଗୋରୁ, ଗାଈ, ମଇଁଷି, ଛେଳି, ମେଣ୍ଢା ଇତ୍ୟାଦି ଗୃହପାଳିତ ଜୀବଜନ୍ତୁଙ୍କର ସଂଖ୍ୟା ସେମାନଙ୍କ ଅବସ୍ଥା ଓ ଖାଦ୍ୟପେୟ ଇତ୍ୟାଦି ବିଷୟର ତଥ୍ୟ, ଦୁହାଁଳିଆ ଗାଈ ଏବଂ ଦୁଧର ପରିମାଣ, ବୃକ୍ଷଲତାଦିର ସଂଖ୍ୟା ଓ ତହିଁର ଅବସ୍ଥା, ବ୍ୟବହାର କରୁଥିବା କୂଅ ପୋଖରୀର ସଂଖ୍ୟା ଓ ତହିଁର ଅବସ୍ଥା, କୃଷିକାମରେ ଜଳ ମଡ଼ାଇବା ପାଇଁ ସୁବିଧା ଅସୁବିଧାର କଥା, ସ୍ୱାସ୍ଥ୍ୟ ଓ ଶିକ୍ଷାର ଅବସ୍ଥା ଓ ତହିଁର ପ୍ରତିକାରର ଉପାୟ—ଗ୍ରାମର ଅବସ୍ଥା ବୁଝିବା ପାଇଁ ଏହିପରି ଗ୍ରାମମାନଙ୍କର ସର୍ଭେ କରାଯାଇ ବିଭିନ୍ନ ତଥ୍ୟ-ସମ୍ବଳିତ ଗୋଟିଏ ରିପୋର୍ଟ ବ୍ଲକ ଅଫିସର ସଂଗ୍ରହ କରିବେ । ବ୍ଲକରେ ଥିବା ପ୍ରତି ଗ୍ରାମର ତଥ୍ୟସବୁ ସଂଗୃହୀତ ହେଲା ପରେ ଏହି ସମସ୍ତ ସଂଗୃହୀତ ତଥ୍ୟକୁ ଏକତ୍ର କରି ସମସ୍ତ ବ୍ଲକର ପରିସ୍ଥିତି ଓ ଗ୍ରାମର ଅବସ୍ଥା ବୁଝିବା କଷ୍ଟକର ହେବ ନାହିଁ ।

## ଅବସ୍ଥା ବୁଝି ବ୍ୟବସ୍ଥା କରାଯିବ

ଗ୍ରାମର ଅବସ୍ଥା ବୁଝିଦେଲେ ବ୍ୟବସ୍ଥା କରିବା ସହଜ ହୋଇଯିବ ନାହିଁ । ଯେକୌଣସି କାର୍ଯ୍ୟର ବ୍ୟବସ୍ଥା କରିବା ପୂର୍ବରୁ ସମ୍ବଳ କଥା ଆଗ ଭାବିବାକୁ ପଡ଼ିବ । ସବୁ ଗ୍ରାମର ଅବସ୍ଥା ସମାନ ନୁହେଁ । ସୁତରାଂ ଗୋଟିଏ ପ୍ରକାର କାର୍ଯ୍ୟକ୍ରମ ସବୁଗ୍ରାମରେ

ଏକ ସମୟରେ ଆରମ୍ଭ କଲେ ତାହାର କୌଣସି ମୂଲ୍ୟ ରହିବ ନାହିଁ । କେଉଁ ଗ୍ରାମରେ କେଉଁ କାମ ଆଗ ହେବା ଉଚିତ ତାହା ସଂଗୃହିତ ତଥ୍ୟ ଓ ଗ୍ରାମର ସମ୍ବଳକୁ ବିଚାର କରି ସ୍ଥିର କରିବା ଉଚିତ । ତାହା ନ ହେଲେ ଗ୍ରାମବାସୀ କଥା ଶୁଣିବେ ନାହିଁ । ଗ୍ରାମରେ ଯେ କୌଣସି କାମ ଆରମ୍ଭ କରିବା ପୂର୍ବରୁ ଉକ୍ତ କାମର ଅଭାବ ଗ୍ରାମବାସୀ ଅନୁଭବ କରି ପାରୁଥିଲେ କାମ କରିବା କଷ୍ଟକର ହେବ ନାହିଁ । ପ୍ରତ୍ୟେକ କର୍ମରେ ଆନୁମାନିକ ଖର୍ଚ୍ଚର ପରିମାଣ, ତହିଁରେ ସାହାଯ୍ୟ କରିବା ପାଇଁ ବ୍ଲକରେ କଣ ବ୍ୟବସ୍ଥା ଅଛି ତାହା ଗ୍ରାମବାସୀଙ୍କୁ ଶୁଣାଇବାକୁ ପଡ଼ିବ । ଧନ ଓ ଶ୍ରମ କିମ୍ବା ଉପକରଣ ଆକାରରେ କେଉଁ ଗ୍ରାମରୁ କଣ ମିଳିବାର ସମ୍ଭାବନା ଅଛି ଇତ୍ୟାଦି ବିଷୟ ଗ୍ରାମବାସୀଙ୍କ ସହିତ ଆଲୋଚନା କରି ବ୍ଲକର କର୍ମଯୋଜନାକୁ କାର୍ଯ୍ୟ କରିବା ଦରକାର । ତାହାହେଲେ ଆମ୍ଭର ଲକ୍ଷ୍ୟ ସାଧିତ ହୋଇ ପାରିବ ବୋଲି ବିଶ୍ୱାସ ।

ଗ୍ରାମର ଅଭାବ ଅନେକ । ସେଥିମଧ୍ୟରେ ପାଣିର ଅଭାବ କଥା ପ୍ରଥମେ ବିଚାର କରିବାକୁ ହେବ । ପିଇବା, ଗାଧୋଇବା, କୃଷିକରିବା ଇତ୍ୟାଦି କାମପାଇଁ ପାଣି ନ ହେଲେ ନ ଚଳେ । ସବୁ ଅଭାବ ମଧ୍ୟରେ ପାଣିର ଅଭାବ ଅତି ଜରୁରୀ ସମସ୍ୟା । ଏହି ଅଭାବ ଦୂର କରିବାକୁ ହେଲେ ପ୍ରତି ଗ୍ରାମରେ ଅତି କମ୍‌ରେ ପ୍ରତି ଚାରିଶହି ପରିବାର ପାଇଁ ଗୋଟିଏ କୂଅ ନିହାତି ଦରକାର । ତାର ପର କୃଷି ପାଇଁ ପାଣି ଯୋଗାଇବାକୁ ବ୍ୟବସ୍ଥା କରିବାକୁ ପଡ଼ିବ । ଏହା ପରେ ଶିକ୍ଷା । ଶିକ୍ଷା ପଛକୁ ସ୍ୱାସ୍ଥ୍ୟ ଏବଂ ତାର ପର ରାସ୍ତା ଘାଟ । ଏହି କ୍ରମରେ ବିଷୟ ବାଛି ଗ୍ରାମର ଉନ୍ନତି ପାଇଁ ଉପଯୁକ୍ତ କର୍ମ ଯୋଜନା କରାଯିବ । ଏହି କର୍ମଯୋଜନା ପାଞ୍ଚବର୍ଷିଆ ଯୋଜନା ହେବ । ଏଥିରେ ପ୍ରତି ଗ୍ରାମ ଓ ପ୍ରତି ପଞ୍ଚାୟତ ସକାଶେ ପାଞ୍ଚବର୍ଷିଆ

କର୍ମଯୋଜନା ବାନ୍ଧି, ବ୍ଲକର ପାଞ୍ଚବର୍ଷିଆ ଯୋଜନା ପ୍ରସ୍ତୁତ କରାଯିବ । ଏହି ପାଞ୍ଚବର୍ଷିଆ କର୍ମଯୋଜନାକୁ କାର୍ଯ୍ୟରେ ପରିଣତ କରିବା ଦ୍ୱାରା ଗ୍ରାମବାସୀମାନଙ୍କ ସ୍ତରର ବୃଦ୍ଧିରେ ପରିବର୍ତ୍ତନ ଘଟି-ପାରିବାର କଳ୍ପନା କରାଯାଇଅଛି । କର୍ମୀବୃନ୍ଦମାନଙ୍କ କର୍ମକୁଶଳତା ଉପରେ ସବୁ ନିର୍ଭର କରୁଛି । କାର୍ଯ୍ୟକୁ ସେମାନେ ଯେପରି ବୁଦ୍ଧିବନ୍ତରେ କରିବେ ଏବଂ କରାଇପାରିବେ ତାହା ହିଁ ତାଙ୍କର କର୍ମକୁଶଳତାର ପରିଚୟ ଦେବ । ବ୍ଲକର ଏହି ପଞ୍ଚବାର୍ଷିକ କର୍ମଯୋଜନା କାର୍ଯ୍ୟକାରୀ କରାଇ ପାରିଲେ ସରକାରଙ୍କ ବିଭିନ୍ନ ସଂସ୍ଥାରେ ଥିବା ସୁଯୋଗ-ସୁବିଧାକୁ ବ୍ୟବହାର କରି ଗ୍ରାମର ଏବଂ ପରିବାରର ଅବସ୍ଥାକୁ ପରିବର୍ତ୍ତନ କରିବାକୁ ଗ୍ରାମବାସୀମାନେ ଅକ୍ଲେଶରେ ବାଟ ପାଇପାରିବେ । ଗ୍ରାମବାସୀଙ୍କ ମନରେ ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କାର୍ଯ୍ୟ ପାଇଁ ଆଗ୍ରହ ଜାତ କରାଇବା ବ୍ଲକର ଏକମାତ୍ର ଲକ୍ଷ୍ୟ । ଗ୍ରାମବାସୀଙ୍କ ମନୋବୃତ୍ତିରେ ଏପରି ପରିବର୍ତ୍ତନ ଆଣିବା ହେଉଛି ବିପ୍ଳବ । ବିପ୍ଳବ କର୍ମପ୍ରେରଣା ସୃଷ୍ଟି କରେ, ଦେଶ ଓ ଗ୍ରାମର ଜୀବନକୁ ଉନ୍ନତ କରି ଗଢ଼ିବାକୁ । ଏହି ଉଦ୍ଦେଶ୍ୟରେ ପ୍ରଧାନ ମନ୍ତ୍ରୀ ଶ୍ରୀ ଜବାହାରଲାଲ ନେହରୁ ବ୍ଲକ କାର୍ଯ୍ୟକୁ ବିପ୍ଳବାତ୍ମକ କାର୍ଯ୍ୟ ବୋଲି ଅଭିହିତ କରିଛନ୍ତି ।

## ଗ୍ରାମବାସୀଙ୍କ ସହଯୋଗ ଲାଭର ଉପାୟ

ଗ୍ରାମର ସର୍ବତୋମୁଖୀ ବିକାଶ ସାଧନ ପାଇଁ ଯେଉଁ କର୍ମ-ଯୋଜନା କରାଯିବ ସେଥିରେ ଗ୍ରାମବାସୀମାନଙ୍କର ପୂର୍ଣ୍ଣ ସହଯୋଗ ନ ମିଳିଲେ ଆମ୍ଭର କୌଣସି ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ନାହିଁ, ଏହା ଜଣାଶୁଣା କଥା । ତେବେ ସେହି ସହଯୋଗ ମିଳିବ କିପରି ? କୌଣସି ଫସଲ ଉତ୍ପାଦନ କରିବାକୁ ପ୍ରଥମେ ମୃତ୍ତିକାକୁ

ଉତ୍ତମରୂପେ କର୍ଷଣ କରାଯାଏ । ତାହା ନ ହେଲେ ଫସଲରୁ ଭଲ ଫଳ ମିଳେ ନାହିଁ । ସେହିପରି ଗ୍ରାମରେ କିଛି କାମ କରିବା ପୂର୍ବରୁ ଗ୍ରାମବାସୀଙ୍କ ମନକଥା ବୁଝିବା ଦରକାର । ସେମାନଙ୍କର ମନକୁ ମନାଇ ପାରିଲେ ନିଶ୍ଚୟ ସାହାଯ୍ୟ ଓ ସହଯୋଗ ମିଳିବ । ସେମାନଙ୍କ ମନକୁ ବୁଝାଇବା କାମ ହେଉ ନାହିଁ । କିଏ କୂଅାଟିଏ ଆସି ଦୁଇ ପଦ କହିଦେଲା ପରି କାମସବୁ ହେଉଥିବାରୁ ତାହା କାହାରି ମନକୁ ସ୍ପର୍ଶ କରିପାରୁ ନାହିଁ । ପ୍ରଥମେ ଦେଶ କହିଲେ କଣ ବୁଝାଏ, ଦେଶର ଲାଭ କ୍ଷତିରେ ଗ୍ରାମର ସୁଖ ଦୁଃଖ କପରି ଜଡ଼ିତ ହୋଇ ରହିଛି, ଏ ବିଷୟରେ ଗ୍ରାମର ସାଧାରଣ ଅଧିବାସୀଙ୍କର କୌଣସି ଧାରଣା ନାହିଁ । ସୁତରାଂ ପ୍ରଥମେ ଦେଶର ପରିସ୍ଥିତି ବିଷୟରେ କିଛି ସାଧାରଣ କଥା କହି ଦେଶର ଦୁଃଖ ଦୂର କରିବାକୁ କପରି କାର୍ଯ୍ୟ କରା ଯାଉଛି ଗ୍ରାମ କପରି ଦେଶର ମୂଳଦୁଆ ଇତ୍ୟାଦି ବିଷୟ ଜାଣିବାପାଇଁ ଗ୍ରାମବାସୀଙ୍କ ମନରେ ଆଗ୍ରହ ଜାତ କରାଇବା ଦରକାର । ଏହାପରେ ବ୍ଲକ କର୍ମ ଯୋଜନାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଓ ଗ୍ରାମବାସୀଙ୍କର ଦାୟିତ୍ୱ କଥା ବୁଝାଇବାକୁ ହେବ । ଗ୍ରାମର ଅବସ୍ଥା ଜାଣିବା ପାଇଁ ସର୍ଭେ କରାଇ ଯେଉଁ ତଥ୍ୟ ସଂଗୃହୀତ ହୋଇଥିବ ସେ ସବୁର ଉନ୍ନତି ନ ଘଟିଲେ ଗ୍ରାମବାସୀଙ୍କର ଦୁଃଖ ଦୂର ହୋଇ ପାରିବ ନାହିଁ, ଏହା ସେମାନେ ଉତ୍ତମରୂପେ ହୃଦୟଙ୍ଗମ କରିବା ଦରକାର । ସଂଗୃହୀତ ତଥ୍ୟକୁ ବିଚାର କରି ତହିଁରେ ଉନ୍ନତିମୂଳକ ପରିବର୍ତ୍ତନ ଘଟାଇବାକୁ ଯେଉଁ କାର୍ଯ୍ୟ କରାଯିବ, ତାହା ଗ୍ରାମର ସମସ୍ତେ ଜାଣିବା ଓ ବିଚାର କରିବା ଉଚିତ । ଗ୍ରାମର ଅବସ୍ଥାର ସଂପୂର୍ଣ୍ଣ ପରିବର୍ତ୍ତନ ଘଟାଇବାକୁ ପାଞ୍ଚ ବର୍ଷ ଭିତରେ କଣ କରିବାକୁ ହେବ, ସେ ସବୁର ସବିଶେଷ ବୃତ୍ତାନ୍ତ ଗ୍ରାମବାସୀମାନଙ୍କ ସହିତ ବସି ବାରମ୍ବାର ବିସ୍ତୃତ ଆଲୋଚନା

ଫଳେ ସେମାନଙ୍କ ମନରେ ଆଶା ଓ ବିଶ୍ୱାସର ଭାବ ନିଶ୍ଚୟ ସଂଚରିତ ହେବ । ଅନ୍ଧକୁ ହାତ ଧରି ବାଟ ଚଲେଇଲା ପରି ବ୍ଲକ୍ କର୍ମଯୋଜନାକୁ ଗ୍ରାମରେ କାର୍ଯ୍ୟକାରୀ କରାଇବା ଦରକାର । କିନ୍ତୁ ସରକାରୀ କର୍ମଚାରୀମାନଙ୍କ ମନରେ ଓ ହୃଦୟରେ ଦେଶକୁ ଗଢ଼ିବାକୁ ବ୍ୟାକୁଳତା ଭାବ ନ ଥିବାରୁ କାମସବୁ ଉପରଠାଉରିଆ ଭାବରେ କରାଯାଉଛି । ସେମାନଙ୍କ ହୃଦୟ ଦେଶପାଇଁ ବ୍ୟାକୁଳ ହେଉନାହିଁ ବୋଲି କଥାରେ କିମ୍ବା ଦୋଷ ଲଦିଦେଲେ ସମସ୍ୟା ସମାଧାନ ହୋଇ ପାରିବ ନାହିଁ । ଦେଶବାସୀ ସମସ୍ତଙ୍କର ଆଜି ଚିନ୍ତା କରିବାର କଥା, ସରକାରୀ କର୍ମଚାରୀ ଓ ଆମ୍ଭମାନଙ୍କ ମଧ୍ୟରେ ପ୍ରଭେଦ କେଉଁଠାରେ ? ଆମ ସମସ୍ତଙ୍କର ମନ ଓ ହୃଦୟ କଣ କହୁଛି ? ଆମେ ସମସ୍ତେ ଦେଶକୁ କିପରି ଦୃଷ୍ଟିରେ ଦେଖୁଛେ ? ଦେଶ କଥା ବୁଝିବା ଅଥବା ଦେଶର ସମସ୍ୟା ସମାଧାନ କରିବା ପାଇଁ ପ୍ରତ୍ୟକ୍ଷ ଆମ୍ଭେମାନେ କଣ କରୁଛେ, ତାହା ପ୍ରତ୍ୟେକ ବ୍ୟକ୍ତି ଚିନ୍ତା କରିବା ଦରକାର । ଅନ୍ୟ ଉପରେ ଦୋଷ ଦେଲେ କିଛି ହୋଇ ପାରିବ ନାହିଁ । କିମ୍ବା କୌଣସି ସମସ୍ୟା ସମାଧାନ କରିବାରେ ତାହା ସାହାଯ୍ୟ କରିବ ନାହିଁ ଏହା ଅଭ୍ରାନ୍ତ ସତ୍ୟ ।

## ବ୍ଲକ୍ କଣ ସବୁ କାର୍ଯ୍ୟ କରିବ

ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ବାଣିଜ୍ୟ, ଗୋପାଳନ ଇତ୍ୟାଦି ପ୍ରତ୍ୟେକ ବିଷୟର ଉନ୍ନତି ସାଧନ କରିବାକୁ ବ୍ଲକ୍ କର୍ମଯୋଜନାରେ ବ୍ୟବସ୍ଥା କରାଯାଇଛି । ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ସବୁ ଅବସ୍ଥାରେ ମନୁଷ୍ୟ ଜୀବନର ବିକାଶ ସାଧନ କରି ପାରିବା ଭଳି ଗ୍ରାମ-ଜୀବନକୁ ସଂଗଠିତ କରିବାକୁ ହେବ । ଏଥିପାଇଁ ଗ୍ରାମରେ ଶିଶୁ ରାଇଜ, ଯୁବକ ସଂଘ, ମହିଳା ମଣ୍ଡଳ—ସାମାଜିକ ଶିକ୍ଷା ଓ ପ୍ରୌଢ଼ ଶିକ୍ଷା

ଆଦ ସଂଗଠନ ଗଢ଼ିବାକୁ ପଡ଼ିବ । ଗ୍ରାମରେ ଏତେଗୁଡ଼ିଏ ସଂଗଠନ ଏବଂ ଏତେ ପ୍ରକାର କାର୍ଯ୍ୟ କରି ଜନଶକ୍ତିକୁ ଜାଗ୍ରତ କରାଇ ନ ପାରିଲେ ଦେଶର କୌଣସି ଉନ୍ନତିମୂଳକ କର୍ମର କଳ୍ପନା କରିବା ବୃଥା । ସୁତରାଂ ଦେଶର ଉନ୍ନତିମୂଳକ ସମସ୍ତ ପ୍ରକାର କାର୍ଯ୍ୟରେ ଜନ ସାଧାରଣଙ୍କ ଆନ୍ତରିକ ସାହାଯ୍ୟ ଓ ସହଯୋଗ ଏକାନ୍ତ ଆବଶ୍ୟକ । ଏଥିରେ ମତ ପାର୍ଥକ୍ୟ ଘଟି ନ ପାରେ । ଜନ ସାଧାରଣ ବୁଝିବା ଉଚିତ ବର୍ତ୍ତମାନ ଦେଶ ସେମାନଙ୍କର । ଦେଶର ଉନ୍ନତି ଘଟିଲେ ଗ୍ରାମର ଏବଂ ଗ୍ରାମରେ ବାସ କରୁଥିବା ପ୍ରତି ପରିବାରର ଉନ୍ନତି ନିଶ୍ଚୟ ଘଟିବ । ଦେଶର ଜନସାଧାରଣଙ୍କ ମଧ୍ୟରୁ ଯେତେ ଅଧିକ ସଂଖ୍ୟାରେ ଲୋକ ଦେଶକୁ ଆପଣାର ବିଚାରି କାର୍ଯ୍ୟ କରିବେ ଦେଶ ସେତିକି ଉନ୍ନତି ଲାଭ କରିବ । ଦେଶବାସୀଙ୍କର କାର୍ଯ୍ୟ ଓ ଚିନ୍ତା, ଚାଲି ଚଳଣ, ରହଣି ସହଣି ଇତ୍ୟାଦି ବିଷୟ ଦେଶର ମର୍ଯ୍ୟାଦାକୁ ପରିଚୟ ଦେବ । ଆମ୍ଭ ଓଡ଼ିଶାରେ କଥା ଅଛି—ଗ୍ରାମ ପରିମଳ ଧୋବା ଭୂଠରୁ ଜଣାପଡ଼େ, ଅର୍ଥାତ୍ ଧୋବା ସଫା କରୁଥିବା ପୋଷାକ ପତ୍ର ଦେଖିଲେ ତହିଁରୁ ଗ୍ରାମରେ ବାସ କରୁଥିବା ଲୋକଙ୍କର ଅବସ୍ଥା ରୁଚି ଜାଣିହୁଏ । ଏହି ପ୍ରବଚନ ଗ୍ରାମ ପାଇଁ ଯେପରି, ଦେଶ ପାଇଁ ସେପରି ମଧ୍ୟ ପ୍ରଯୁଜ୍ୟ । ଆମେରିକା ଓ ଇଂଲଣ୍ଡର ଲୋକଙ୍କ ପୋଷାକ ପତ୍ର କଥା ଓ ବ୍ୟବହାର ଦେଖି ଆମ୍ଭେମାନେ ସେମାନଙ୍କୁ ଓ ସେମାନଙ୍କ ଦେଶକୁ ଉନ୍ନତ ବୋଲି ବିଚାରୁଛେ । ସୁତରାଂ ଆମ୍ଭମାନଙ୍କ କର୍ମକୁଶଳତା ଦେଶପ୍ରୀତି—ଶୃଙ୍ଖଳିତ ଜୀବନକୁ ଦେଖି ଆମ୍ଭର ଓ ଆମ୍ଭ ଦେଶର ଭଲ ମନ୍ଦ ଦୁନିଆର ଲୋକେ ବିଚାର କରିବେ । ତେଣୁ ଗ୍ରାମର ପୁନର୍ଗଠନ କାର୍ଯ୍ୟରେ ଗ୍ରାମବାସୀଙ୍କର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଉନ୍ନତ ଜୀବନ ବିକାଶ କରିବା ଉଦ୍ଦେଶ୍ୟରେ—ଜନ୍ମ

ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସବୁ ଅବସ୍ଥାରେ ଶୃଙ୍ଖଳିତ ଜୀବନ ଯାପନ କରି ପାରିବା ଭଳି ଅନୁଷ୍ଠାନ ସବୁ ଗଢ଼ାଯିବାର ବ୍ୟବସ୍ଥା କରାଯାଇ ଅଛି । ବର୍ତ୍ତମାନ ଆମ୍ଭର ଦେଶ ସ୍ୱାଧୀନ । ଆମର ଆଜି କୌଣସି ବାଧା ଅବା ପ୍ରତିବନ୍ଧକ କିଛି ନାହିଁ । ଆମ୍ଭର ପରିବାର ଓ ଗ୍ରାମକୁ ଆମ୍ଭେମାନେ ନିଜ ଇଚ୍ଛାନୁସାରେ ଗଢ଼ି ପାରିବା । ଏହି କଥା ସମସ୍ତଙ୍କର ସ୍ମରଣ ରଖିବା ଉଚିତ । ବ୍ଲକ କର୍ମଚାରୀ ଏହାକୁ ସ୍ମରଣ କରି କାର୍ଯ୍ୟ କରିବା ଯେପରି ସେମାନଙ୍କର କର୍ତ୍ତବ୍ୟ, ଗ୍ରାମବାସୀ-ମାନଙ୍କର ମଧ୍ୟ ତଦ୍ରୂପ କର୍ତ୍ତବ୍ୟ ରହିଛି । କାରଣ ଉଭୟଙ୍କ ସହଯୋଗରେ ଗ୍ରାମ ସବୁର ରୂପ ବଦଳାଇବାକୁ କର୍ମ ଯୋଜନା କରାଯାଇଛି ।

## ଗ୍ରାମର ମୂଳଭିତ୍ତିର ଆଧାର

ଦେଶର ସମୃଦ୍ଧ ଉନ୍ନତି ନ ଘଟିଲେ କୌଣସି ବ୍ୟକ୍ତି, ପରିବାର କିମ୍ବା ଗ୍ରାମର କାହାରି କିଛି ଉନ୍ନତି ଘଟିବ ନାହିଁ । ପୁଣି ଦେଶର ଜନସାଧାରଣଙ୍କ ହୃଦୟରେ ଗ୍ରାମ ତଥା ଦେଶ ପ୍ରତି ଅନୁରାଗ ଓ ଦାୟିତ୍ୱ-ବୋଧ ଜାଗ୍ରତ ନ ହେଲେ ଆମ ଦେଶ ମଧ୍ୟ ସମୃଦ୍ଧ ଉନ୍ନତି ସାଧନ କରି ପାରିବ ନାହିଁ । ଗ୍ରାମ ହେଲା ଦେଶର ମୂଳଦୁଆ । ଏହି ମୂଳ ଭିତ୍ତିକୁ ଦୃଢ଼ କରି ଗଢ଼ିବାକୁ ବ୍ଲକ ସ୍ଥାପନ କରାଯାଇଛି । ବ୍ଲକ ଖୋଲି କର୍ମଚାରୀ ନିଯୁକ୍ତ କରି ଦେଲେ ଦେଶର ମୂଳଦୁଆ ଟାଣ ହୋଇ ଗଢ଼ି ଉଠିବ ନାହିଁ । ଗ୍ରାମର ମୂଳଦୁଆ ଯାହା ଉପରେ ଦଣ୍ଡାୟମାନ ତାହାର ଉନ୍ନତି ସାଧନ କରିବା ନିହାତି ଦରକାର । ଗ୍ରାମର ମୂଳଦୁଆ ତିନୋଟି ଅନୁଷ୍ଠାନ—ଗ୍ରାମପଞ୍ଚାୟତ, ସମବାୟ ସମିତି ଓ ବିଦ୍ୟାଳୟ । ଏହି ତିନୋଟି ଅନୁଷ୍ଠାନର କାର୍ଯ୍ୟ ଗ୍ରାମ-ଜୀବନ ବିକାଶ କରିବାର ମୂଳାଧାର । ଗ୍ରାମ-ଜୀବନକୁ ଉନ୍ନତ କରି

ଗଢ଼ିବାକୁ ହେଲେ ଏହି ତିନୋଟି ଅନୁଷ୍ଠାନ ହେଉଛି ମୂଳ ଉପାଦାନ । ଆମ୍ଭ ଦେଶରେ ପୂର୍ବେ ଏହି ତିନୋଟି ଅନୁଷ୍ଠାନ ଗ୍ରାମ ଜୀବନକୁ ପ୍ରଭାବିତ କରୁଥିଲା । କିନ୍ତୁ ତାହାର ସ୍ୱରୂପ ବଦଳି ଯାଇଛି । ତାହା ଯେପରି ଥିଲା ଏବଂ ଯେପରି କାର୍ଯ୍ୟ କରୁଥିଲା ଆଜି ସେପରି ନାହିଁ କିମ୍ବା ସେପରି କାର୍ଯ୍ୟ କରୁନାହିଁ । ବର୍ତ୍ତମାନ ଏହି ଅନୁଷ୍ଠାନ ସବୁର ମଧ୍ୟ ପୂର୍ବ ପରି କୌଣସି ଆଦର୍ଶ ନାହିଁ ।

## ଗ୍ରାମର ମୂଳଦୁଆ ଠାଣ କରିବାକୁ ପଞ୍ଚାୟତ-ରାଜ ସ୍ଥାପନ

ଗ୍ରାମ ପଞ୍ଚାୟତ, ସମବାୟ ସମିତି ଓ ପାଠଶାଳା ଗ୍ରାମର ମୂଳ-ଦୁଆର ଆଧାର ସ୍ୱରୂପ । ଏହି ତିନୋଟି ଅନୁଷ୍ଠାନର ସାହାଯ୍ୟରେ ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କାର୍ଯ୍ୟ ସମ୍ପାଦନ କରାଯିବ । ସେଥିପାଇଁ ଆଇନ ବାନ୍ଧି ପ୍ରଥମେ ଗ୍ରାମ ପଞ୍ଚାୟତ ଗଠନ କରାଯାଇ ଅଛି । ଗ୍ରାମ ପଞ୍ଚାୟତ ଗଠନ କରିବାର ପ୍ରଧାନ ଉଦ୍ଦେଶ୍ୟ ଗ୍ରାମ ବାସୀଙ୍କ ମନରେ ଦାୟିତ୍ୱଜ୍ଞାନ ଉଦ୍ରେକ କରିବା । ଦେଶରେ ସ୍ୱରାଜ୍ୟ ପ୍ରତିଷ୍ଠିତ ହୋଇଛି । ସ୍ୱରାଜ୍ୟ ଅର୍ଥ ପ୍ରଜା ରାଜ୍ୟ । ପ୍ରଜାଙ୍କର ରାଜ୍ୟରେ ପ୍ରଜାଙ୍କ ହାତକୁ ଶାସନ ଅଧିକାର ହସ୍ତାନ୍ତର କରିବାକୁ ହେବ । ସମସ୍ତ ଶାସନ କ୍ଷମତା କେନ୍ଦ୍ରୀଭୂତ ହୋଇ ରହିଲେ ତାହା ଦେଶପ୍ରତି ମଙ୍ଗଳକର ହେବନାହିଁ । ପୁଣି ଦେଶର ସାଧାରଣ ଅଧିବାସୀ ସ୍ୱରାଜ୍ୟର ନିଦର୍ଶନ ଅବା ପ୍ରଜା କିପରି ଶାସନର ମାଲିକ ହେଲେ ତାହା ବୁଝି ପାରିବେ ନାହିଁ । ସବୁ କାମରେ ପ୍ରଜାକୁ କର୍ମଚାରୀମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ । ସୁତରାଂ ଦେଶରେ ଶାସନକୁ ବିକେନ୍ଦ୍ରୀକରଣ କରିବା ଆବଶ୍ୟକ । ଏଣୁ ଦେଶରେ ପଞ୍ଚାୟତ ଗଢ଼ାଯାଇଛି । କିନ୍ତୁ ଯେଉଁ ଉଦ୍ଦେଶ୍ୟରେ ସେଗୁଡିକ ଗଢ଼ାଯାଇଛି କାର୍ଯ୍ୟରେ ତାହାର ପରିଣାମ ବିପରୀତ ଦେଖାଯାଉଛି । ଏଣୁ

ପଞ୍ଚାୟତଗୁଡ଼ିକୁ କାମରେ ଲଗାଇ ଗ୍ରାମର ଉନ୍ନତି କରିବା ବ୍ଲକ କାର୍ଯ୍ୟରେ ସାମିଲ ହୋଇଛି । ଗ୍ରାମର ଉନ୍ନତିମୂଳକ ସମସ୍ତ କାର୍ଯ୍ୟ ପଞ୍ଚାୟତ କରିବ । ପଞ୍ଚାୟତ ଗଠନମୂଳକ କାର୍ଯ୍ୟ କଲେ ଦାୟିତ୍ୱ-ଜ୍ଞାନ ବଢ଼ିବ, ଏହି ଉଦ୍ଦେଶ୍ୟରେ ଉନ୍ନତିମୂଳକ କାର୍ଯ୍ୟ ପଞ୍ଚାୟତ ଦ୍ୱାରା କରାଯିବାକୁ ନିୟମ କରାଯାଇଛି । ଦେଶରେ ପଞ୍ଚାୟତ ରାଜ୍ୟ ସ୍ଥାପନ କରାଯିବ । ପଞ୍ଚାୟତକୁ ଦାୟିତ୍ୱ ସଂପନ୍ନ ଓ କର୍ମଠ କରାଇବାପାଇଁ ଅଧିକ ଶାସନ ଅଧିକାର ଦେବାକୁ ହେବ । ଗ୍ରାମର ମୂଳଦୁଆକୁ ଟାଣ କରି ଗଢ଼ିବାକୁ ହେଲେ ପଞ୍ଚାୟତ-ରାଜ-ସ୍ଥାପନ ଛଡ଼ା ଅନ୍ୟ ଗତି ନାହିଁ ।

## ଗ୍ରାମଗଠନ ଯୋଜନା କିଏ କରିବ

ବ୍ଲକ୍ କାମ ଗ୍ରାମବାସୀଙ୍କ ମନକୁ ଆକର୍ଷଣ କରି ପାରୁନାହିଁ । ସାଧାରଣ ଗ୍ରାମବାସୀ ବ୍ଲକ୍ କାର୍ଯ୍ୟରେ ଆନ୍ତରିକ ସାହାଯ୍ୟ ସହଯୋଗ କରୁ ନାହାନ୍ତି । ଏହି କାରଣରୁ ଦେଶରେ ବ୍ଲକ୍ କାର୍ଯ୍ୟ ସମାଲୋଚନା କରି ବିଭିନ୍ନ ମତାମତ ପ୍ରକାଶ ପାଉଛି । ଏହିସବୁ ସମାଲୋଚନାକୁ ବିଶ୍ଳେଷଣ କରି ଦେଖିବାକୁ ଗଲେ ବୁଝା ପଡ଼ୁଛି ଯେ ଦିଲ୍ଲୀ ନଗରୀରେ ବସି କର୍ମଯୋଜନା କରି ଗ୍ରାମ ଉପରେ ଲଦି ଦିଆ ଯାଉଥିବାରୁ ତାହା ଗ୍ରାମବାସୀମାନେ ଗ୍ରହଣ କରିପାରୁ ନାହାନ୍ତି । ଗ୍ରାମର ଅବସ୍ଥାକୁ ବିଚାର କରି ଗ୍ରାମବାସୀମାନେ ଯେଉଁ କାମ କରିବାକୁ ଇଚ୍ଛା ପ୍ରକାଶ କରନ୍ତେ ଅବା ଯେଉଁ କର୍ମଯୋଜନା କରନ୍ତେ ତାହାକୁ ଗ୍ରହଣ କରି କାର୍ଯ୍ୟ କରାଗଲେ ତହିଁରେ ସାହାଯ୍ୟ ସହଯୋଗ ଗ୍ରାମରୁ ମିଳି ପାରନ୍ତା । ତାହା ନ ହୋଇ ଉପରୁ ଯୋଜନା କରି ଗ୍ରାମବାସୀଙ୍କ ଉପରେ ଲଦିଦେଲେ ଫଳ ଯେପରି ହୁଏ ତାହା ହିଁ ହେଉଛି । ଉପରୁ ଲଦି ଦିଆଯାଉଥିବା କାମ କାହାରି ମନକୁ ପାଉନାହିଁ । ତାହାକୁ ନିଜର କାର୍ଯ୍ୟ ବୋଲି କେହି ବିଚାରୁନାହାନ୍ତି । ବ୍ଲକ୍‌ର

କର୍ମଯୋଜନାକୁ ଏହିପରି ଦୃଷ୍ଟିରେ ବିଗ୍ରହକରି ବିରୁଦ୍ଧାତ୍ମକ ମତାମତ ପ୍ରକାଶ କରାଯାଉଛି । କିନ୍ତୁ ଏହିଠାରେ ବିଚାର କରିବାର କଥା ଗ୍ରାମର ଯୋଜନା କିଏ କରିବ ଏବଂ ତାହାକୁ କିଏ କିପରି ଗ୍ରହଣ କରିବ ? ଗ୍ରାମର ବର୍ତ୍ତମାନ ପରିସ୍ଥିତି ଯେପରି—ସେଥିରେ ଗ୍ରାମ ମଧ୍ୟରୁ କେତେଜଣ ବସି ଗ୍ରାମପାଇଁ ସମୃଦ୍ଧ ଉନ୍ନତିମୂଳକ କର୍ମଯୋଜନା କଳ୍ପନା କରି ପାରିବେ ନାହିଁ କିମ୍ବା କୌଣସି ରାଜନୈତିକ ଦଳର କର୍ମୀ କେତେକ ଗ୍ରାମରୁ କିଛି ଲୋକ ଏକତ୍ର କରାଇ ଗୋଟିଏ କର୍ମଯୋଜନା ବାଢ଼ିଦେଲେ ତାହା ସମସ୍ତଙ୍କର ଗ୍ରହଣଯୋଗ୍ୟ ବିବେଚିତ ହେବ ନାହିଁ । ଏପରି ଅବସ୍ଥାରେ ତଳୁ କର୍ମଯୋଜନା କିଏ କରିବ ? ତଳୁ ଯୋଜନା ପାଇବାକୁ ରହି ବସିଲେ ଦେଶର ପୁନର୍ଗଠନ କାମ ପଛେଇ ଯିବ ।

ଦେଶର ଭବିଷ୍ୟତ୍ ରୂପରେଖରେ ପରିବର୍ତ୍ତନ ଘଟିବ । ଇଂରେଜ ସରକାର ଏ ଦେଶକୁ ଶାସନ କରିବାକୁ ଯେପରି ରୂପରେଖ ଅଙ୍କନ କରିଥିଲେ ସେଥିରେ ଅଦଳ ବଦଳ କରିବାକୁ ହେବ । ବିଦେଶୀ ଶାସନର ବ୍ୟବସ୍ଥାରେ ଜନସାଧାରଣଙ୍କର କୌଣସି ପ୍ରକାର ସାକ୍ଷାତ ସମ୍ବନ୍ଧ ନ ଥିଲା କିମ୍ବା ପ୍ରତ୍ୟେକ କାର୍ଯ୍ୟରେ ଲୋକଙ୍କ ସାହାଯ୍ୟ ସହଯୋଗ ଲାଭ କରିବାର ଆବଶ୍ୟକତା କେହି ଅନୁଭବ କରୁ ନ ଥିଲେ । କିନ୍ତୁ ସ୍ୱାଧୀନ ଭାରତରେ ପ୍ରତି କାର୍ଯ୍ୟରେ ଏବଂ ପ୍ରତି ମୁହୂର୍ତ୍ତରେ ଜନସାଧାରଣଙ୍କର ସାହାଯ୍ୟ ସହଯୋଗ ଲାଭ କରିବା ହେଲା ଏକମାତ୍ର ଲକ୍ଷ୍ୟ । ଏହି ଲକ୍ଷ୍ୟକୁ ସମ୍ମୁଖରେ ରଖି ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କର୍ମଯୋଜନାକୁ କଳ୍ପନା କରାଯାଇଛି । ଏହି ଯୋଜନା ହାର ତଳୁ ଅର୍ଥାତ୍ ଗ୍ରାମରୁ ନିର୍ଦ୍ଦେଶ ଆସିବ । ଗ୍ରାମକୁ ଉନ୍ନତ କରି ଗଢ଼ିବାକୁ ଯାହା କାମ କରାଯିବ ତାହା ଆଗ୍ର

ଗ୍ରାମବାସୀମାନେ ବସି ବିଚାର କରିବେ । ସେମାନେ ଯେଉଁ କାମକୁ କରିବାପାଇଁ ନିଷ୍ପତ୍ତି କରିବେ, ତାହା ହିଁ କେବଳ କରାଯିବ । ସାଧାରଣ ଗ୍ରାମବାସୀ ଓ ସରକାରୀ କର୍ମଚାରୀ ଉଭୟଙ୍କ ପରାମର୍ଶରେ କର୍ମଯୋଜନା ବାନ୍ଧି କାର୍ଯ୍ୟ କରାଯିବ । ବ୍ଲକର କର୍ମ ହିଁ ଏହାର କେବଳ ସୂଚନା ଦେବ । ଏଥିରେ କାମ ସବୁ ଉପରୁ ଲଦିଦେବାର ନାମ ଗନ୍ଧ ନାହିଁ ।

ଦେଶରେ ଜନସାଧାରଣଙ୍କ ଚିନ୍ତାରେ ବିଭ୍ରାଟ ଘଟିଛି । ଦେଶର ମେରୁଦଣ୍ଡ ଭାଙ୍ଗି ଯାଇଛି । ଲୋକଙ୍କ ବିଚାର ବୁଦ୍ଧିରେ ଠିକଣା ନାହିଁ । ଲୋକେ ବାଟ ପାଉ ନାହାନ୍ତି । ଦେଶକୁ ଆପଣାର କରି ଦେଖୁ ନାହାନ୍ତି । ଗ୍ରାମରେ ବାସ କରୁଥିବା ଲୋକଙ୍କ କାର୍ଯ୍ୟ ଓ ଚିନ୍ତାରେ ମେଳ ନାହିଁ । ଏପରି ଅବସ୍ଥାରେ ଉନ୍ନତି ଯୋଜନା ଗଢ଼ିବା ଅସମ୍ଭବ ହୋଇଛି । ଏହି କାରଣରୁ ବ୍ଲକର ସଂଗଠନ ଗଢ଼ାଯାଇଛି । ଗ୍ରାମରେ ଶିକ୍ଷିତ, ଧନୀ, ଭଦ୍ର ଓ ବଡ଼ ଲୋକ ବୋଲାଉଥିବା, ଯେଉଁ କେତେ ଜଣ ବାସକରୁଛନ୍ତି ସେହିମାନେ ବ୍ଲକ କାମରେ ଅଧିକ ଆଗ୍ରହ ଦେଖାଉଅଛନ୍ତି । ଗ୍ରାମର ସାଧାରଣ ଲୋକଙ୍କ ସୁଖ ଦୁଃଖରେ ଏହିମାନଙ୍କର କୌଣସି ଚିନ୍ତା ନାହିଁ । କିନ୍ତୁ ସାଧାରଣ ଗ୍ରାମବାସୀଙ୍କ ପାଇଁ ଯାହା କିଛି ଉନ୍ନତିମୂଳକ କାର୍ଯ୍ୟ କରାଯାଉଛି ତହିଁର ସୁବିଧା ଅଧିକ ମାତ୍ରାରେ ଏହିମାନେ ଲାଭ କରୁଛନ୍ତି । ସବୁ କାର୍ଯ୍ୟରେ ପ୍ରଭୁତ୍ୱ ଦେଖାଇବା ଲାଳସାରେ ଏହି ଶ୍ରେଣୀର ଲୋକେ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି—ଏବଂ ତହିଁରେ ବାଧା ପାଇଲେ ଦ୍ୱନ୍ଦ୍ୱ ଲଗାଇ ବିଭେଦ ସୃଷ୍ଟି କରୁଛନ୍ତି । ଏପରି ଅବସ୍ଥାରେ ଉନ୍ନତି ସମସ୍ତଙ୍କ ଗ୍ରହଣଯୋଗ୍ୟ କର୍ମଯୋଜନା ଆସିପାରୁ ନାହିଁ । ସୁତରାଂ ଯୋଜନା ତଳୁ ନ ଆସି ଦିଲ୍ଲୀ କଟକରୁ ଆସି ଗ୍ରାମ ଉପରେ ଲଦି ଦିଆଯାଇଛି ବୋଲି କଥାର କୌଣସି ମୂଲ୍ୟ ନାହିଁ ।

## ଗ୍ରାମରେ ଜୀବନ ସଞ୍ଚାର କରିବା ବଡ଼ କାର୍ଯ୍ୟ

ପଞ୍ଚାୟତ, ସମବାୟ ସମିତି ଓ ପାଠଶାଳା ଏହି ତିନୋଟି ଅନୁଷ୍ଠାନ ଗ୍ରାମର ମୂଳଦୁଆକୁ ଗଠନ କରିବ । ଏହି ତିନୋଟି ଅନୁଷ୍ଠାନର ସାହାଯ୍ୟରେ ପଲ୍ଲୀ-ଜୀବନକୁ ନିୟନ୍ତ୍ରଣ କରି ଗ୍ରାମର ବିକାଶ ସାଧନ କରିବାକୁ ହେବ । ଏହି କଳ୍ପନାରେ ବ୍ଲକର କାର୍ଯ୍ୟ-କ୍ରମ ସ୍ଥିର କରାଯାଇ ଅଛି । ଗ୍ରାମ ପଞ୍ଚାୟତ ବ୍ଲକ କାର୍ଯ୍ୟର ଏକ ମାତ୍ର ଆଧାର ଓ ପ୍ରଧାନ ଅବଲମ୍ବନ । ଏଣୁ ଗ୍ରାମର ଉନ୍ନତିମୂଳକ-ଯୋଜନାର ସମସ୍ତ କର୍ମ ସଂପାଦନ କରିବାର ଦାୟିତ୍ୱ ପଞ୍ଚାୟତ ଉପରେ ଅର୍ପଣ କରାଯାଉଛି । ଗ୍ରାମ ପଞ୍ଚାୟତ ଠାରୁ ଆରମ୍ଭ କରି ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ ଯୋଗସୂତ୍ର ସ୍ଥାପନ କରି କିପରି ସମସ୍ତ କାର୍ଯ୍ୟ କରାଯିବ ଏହା ହିଁ ହେଲା ନୂତନ ଭାରତ ଗଠନର ମୂଳମନ୍ତ୍ର । ଏହି ମୂଳମନ୍ତ୍ର ଭାରତର ପ୍ରତ୍ୟେକ ନରନାରୀଙ୍କ ହୃଦୟରେ କିପରି ପ୍ରତି-ଧ୍ୱନିତ ହେବ ସେଥିପାଇଁ ସୋପାନ ବନ୍ଧାଯାଇଛି । ତହିଁର ପ୍ରଥମ ସୋପାନ ଗ୍ରାମପଞ୍ଚାୟତ । ଏହି ପ୍ରଥମ ସୋପାନ ଦୁର୍ବଳ ରହିଲେ ବ୍ଲକ୍‌ର କାର୍ଯ୍ୟକ୍ରମ ଫଳପ୍ରଦ ହୋଇ ପାରିବ ନାହିଁ । ପ୍ରଥମ ସୋପାନର କାର୍ଯ୍ୟକୁ ଫଳପ୍ରଦ କରେଇବା ପାଇଁ ବ୍ଲକ୍ ଉନ୍ନୟନ ସମିତି ଗଠନ କରାଯାଇଛି । ବ୍ଲକ୍ ଉନ୍ନୟନ ସମିତିରେ ପଞ୍ଚାୟତର ସରପଞ୍ଚ ସଭ୍ୟ ରହିବେ । ବ୍ଲକ୍ ଅନ୍ତର୍ଗତ ଗ୍ରାମ ସବୁରେ କେଉଁ କାମ କେଉଁଠାରେ କରାଯିବ ଇତ୍ୟାଦି ବିଷୟ ଆଲୋଚିତ ହୋଇ କାର୍ଯ୍ୟକ୍ରମ ସ୍ଥିର କରାଯିବ ? ସମିତିର ସଭ୍ୟମାନେ ନିଜର ବୁଦ୍ଧି ଓ ବିଚାର ଦେଇ କାର୍ଯ୍ୟକୁ ସମର୍ଥନ କରିବେ । ସେମାନେ ଯେଉଁ କାର୍ଯ୍ୟକୁ ଯେଉଁଠାରେ ଯେପରି ହେବାର ସ୍ଥିର କରିଦେବେ ତାହା ହିଁ କେବଳ କାର୍ଯ୍ୟକାରୀ କରାଯିବ । ପଞ୍ଚାୟତର ସରପଞ୍ଚ ସମିତିର ସଭ୍ୟଥିବାରୁ ବ୍ଲକ କାର୍ଯ୍ୟକ୍ରମ ଆଲୋଚନା କରିବାର

ସୁବିଧା ପାଇ ପାରିଲେ ବ୍ଳକ୍‌ର ଯେଉଁ କାମ କରିବା ଦାୟିତ୍ୱ ପଞ୍ଚାୟତକୁ ଦିଆଯାଇଛି, ଉକ୍ତ କାମକୁ ସରପଞ୍ଚ ସମର୍ଥନ କରିଛନ୍ତି। ସୁତରାଂ ତାହା ହେଲା ତାଙ୍କର ନିଜର କାମ। ନିଜର କାମ କରିବାଓ କରେଇବାରେ ମନୁଷ୍ୟର ଆଗ୍ରହ ଜାତ ହୁଏ। ପଞ୍ଚାୟତ କାର୍ଯ୍ୟରେ ସରପଞ୍ଚଙ୍କର ଆଗ୍ରହ ହେବା ସ୍ୱାଭାବିକ। ତେଣୁ ପଞ୍ଚାୟତକୁ ବ୍ଳକର ମୂଳ ଆଧାର ସ୍ୱରୂପ ଗ୍ରହଣ କରି ଦାୟିତ୍ୱ ଜ୍ଞାନ ସମ୍ବଳିତ କାମ କରେଇବାକୁ ଚେଷ୍ଟା କରାଯାଉଛି। ଯେଉଁ ମୂଳମନ୍ତ୍ର ସମସ୍ତ ଭାରତକୁ ଏକାଠି ବାନ୍ଧି ରଖିଛି ସେହି ମନ୍ତ୍ରକୁ ରୂପରେଖ ଦେବାକୁ ଗ୍ରାମ ପଞ୍ଚାୟତ, ବ୍ଳକ ଉନ୍ନୟନ ସମିତି ଜନ୍ମ ଲାଭ କରିଛନ୍ତି। ତାରପର ଜିଲା ପରିଷଦ ବିଧାନ ସଭା ଓ ପାର୍ଲିଆମେଣ୍ଟ ରହିଛି। ଗ୍ରାମରେ ବାସକରୁଥିବା ସାଧାରଣ ଗ୍ରାମବାସୀମାନେ ଯାହା ଚିନ୍ତା କରୁଛନ୍ତି ସେହି ଚିନ୍ତାଧାରା ଗ୍ରାମ ପଞ୍ଚାୟତ ଠାରୁ ଆରମ୍ଭ କରି ବ୍ଳକ୍ ଉନ୍ନୟନ ସମିତି, ଜିଲା ପରିଷଦ, ବିଧାନ ସଭା ଓ ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ କିପରି ପ୍ରବାହିତ ହେବ ଏହି କଳ୍ପନାରେ ଅବୟବ ଗଠନ କରାଯାଇଛି। ଏହି ଅବୟବର ପାଦଦେଶ ଦୁର୍ବଳ ହୋଇ ପଡ଼ିଥିବାରୁ ସେଥିରେ ବଳ ସଂଗ୍ରହ କରିବାକୁ ବ୍ଳକ୍ କାର୍ଯ୍ୟକ୍ରମର ପରିକଳ୍ପନା। ଗ୍ରାମ ପଞ୍ଚାୟତ, ବ୍ଳକ ଉନ୍ନୟନ ସମିତି ଓ ଜିଲା ପରିଷଦ ଯେପରି ଦୃଷ୍ଟି ରଖି କାମ କଲେ କାର୍ଯ୍ୟରେ ତ୍ରୁଟି ରହିବା ନାହିଁ ତାହା ସେପରି ହେଉନାହିଁ। ସେମାନଙ୍କ ଚିନ୍ତାଧାରା ଠିକଣା ବାଟରେ ଗତି କରୁନାହିଁ। ସେମାନେ ବାଟ ପାଇ ପାରୁନାହାନ୍ତି ଏବଂ ବାଟ ଖୋଜି ବାହାର କରିବାକୁ କାହାର ଇଚ୍ଛା ଥିଲା ପରି ଜଣା ପଡୁନାହିଁ। ଏହାର କାରଣ ହେଉଛି ସେମାନଙ୍କର ବଳ ଆସି ନାହିଁ। ନୂତନ କରି ଜନ୍ମଲାଭ କରିଛନ୍ତି। ପରିପୁଷ୍ଟ ହେବାକୁ ସମୟ ଲାଗିବ। ପିଲାକୁ ହେଲେ ଗଢ଼ିବା ପାଇଁ କିପରି କ'ଣ କରାଯାଇଛି

ଏବଂ ପଞ୍ଚାୟତରେ ବଳ ସଞ୍ଚାର କରିବାକୁ କପରି କାର୍ଯ୍ୟର କଳ୍ପନା କରାଯାଉଛି ତାହା ଅନୁମାନ କରି ପାରିଲେ ବୁଝିବା କଠିନ ହେବ ନାହିଁ ।

## ଦେଶବାସୀଙ୍କ ମନୋବୃତ୍ତି ଦେଶର ବଡ଼ ସମ୍ବଳ

ନିଜର ବ୍ୟକ୍ତିଗତ ସ୍ୱାର୍ଥକୁ ବଡ଼ କରି ନ ବିଚାରି ଦେଶର ସ୍ୱାର୍ଥକୁ ଜୀବନର କର୍ତ୍ତବ୍ୟ ରୂପେ ଭାବିବାରେ ପରମ ଆନନ୍ଦ ଅନୁଭବ କରିପାରିଲେ ଦେଶ ଓ ସମାଜରେ ସେପରି ବ୍ୟକ୍ତିର ସମାଦର ବଢ଼େ । ଦେଶ ଓ ସମାଜରେ ସମାଦୃତ ହେବାର ବ୍ୟକ୍ତି ବିଶେଷ ଯେଉଁ ଦେଶରେ ଯେତେ ଅଧିକ, ସେହି ଦେଶ ପୃଥିବୀରେ ସେତିକି ମହତ୍ ଓ ଉନ୍ନତ । ଆମ୍ଭ ଦେଶର ମୂଳଦୁଆ ହେଲା ଗ୍ରାମ । ସୁତରାଂ ଦେଶ ଓ ସମାଜରେ ସମାଦର ଲାଭ କରି ପାରିବା ମନୋବୃତ୍ତିର ନରନାରୀ ଗ୍ରାମରେ କପରି ଅଧିକ ସଂଖ୍ୟାରେ ଦେଖିବାକୁ ମିଳିବେ, ତାହାହିଁ ବିଚାରିବାର କଥା । ସେପରି ମନୋବୃତ୍ତିର ଲୋକ ଗ୍ରାମରେ ଦେଖିବାକୁ ନ ପାଇଲା ପର୍ଯ୍ୟନ୍ତ ଗ୍ରାମ ଜୀବନରେ ପ୍ରାଣ ସଂଚାରିତ ହେଲା ବୋଲି ପ୍ରମାଣିତ ହେବ ନାହିଁ । କିନ୍ତୁ ଏପରି ଚିନ୍ତା ଆମ ଦେଶରେ ଗୋଟିଏ ନୂଆ କଥା ଏବଂ ଗୋଟିଏ ନୂତନ ଚିନ୍ତାଧାରା । କାରଣ ଆମ ଦେଶରେ ପୂର୍ବେ କେହି ଦେଶକଥା ଭାବୁ ନ ଥିଲେ । ଦେଶପାଇଁ ଭାବନା କରିବାର ଆବଶ୍ୟକତା ନ ଥିଲା । ରାଜା ଦେଶକୁ ଚଳାଉଥିଲେ । ଜଣେ ରାଜା ତଡ଼ାଯାଇ ଆଉ ଜଣେ ଦେଶରେ ରାଜା ବନୁଥିଲେ । ତଦ୍ଦ୍ୱାରା ସାଧାରଣ ପ୍ରଜାଙ୍କ ଜୀବନ ଉପରେ କୌଣସି ପ୍ରଭାବ ପଡ଼ୁ ନ ଥିଲା । ତେଣୁ ଦେଶର ଭଲମନ୍ଦ ଚିନ୍ତା କରିବା ସାଧାରଣ ପ୍ରଜାର କାର୍ଯ୍ୟ ନ ଥିଲା । ସେତେବେଳର ପରିସ୍ଥିତିରେ ଗ୍ରାମର ଲୋକେ

କେବଳ ସେମାନଙ୍କ ଗ୍ରାମ କଥା ଭାବୁଥିଲେ । ଅନ୍ୟ ଗ୍ରାମକଥା ମଧ୍ୟ ସେମାନଙ୍କୁ ସ୍ପର୍ଶ କରୁଥିଲା ପରି ଜଣା ପଡ଼ୁନାହିଁ । କିନ୍ତୁ ବର୍ତ୍ତମାନ ଜଗତ ବଦଳି ଯାଇଛି । ସେତେବେଳେ ଓ ବର୍ତ୍ତମାନ ଅବସ୍ଥା ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ବର୍ତ୍ତମାନ ସୁଦୂର ଆମେରିକା ଓ ଇଂଲଣ୍ଡର ସୁଖ ଦୁଃଖ ଆମର ଜୀବନ ଉପରେ ରେଖାପାତ କରୁଛି । ସେ ଦେଶର ତିଆରି ଜିନିଷ ନ ହେଲେ ଆମର ଅଚଳ ଅବସ୍ଥା ସୃଷ୍ଟି ହେଉଛି । ଆମର ଚିନ୍ତା ଓ ମନୋବୃତ୍ତିର ପରିବର୍ତ୍ତନ ନ ଘଟିଲେ ଏବଂ ନିଜ ଗ୍ରାମ ତଥା ଦେଶକୁ ଆପଣାର ବିଚାରି କାର୍ଯ୍ୟ ନ କଲେ ଆମର ଦୁଃଖର ସୀମା ରହିବ ନାହିଁ । ଆମମାନଙ୍କର ଜୀବନର ସୁଖ ଦୁଃଖ, ଗ୍ରାମ ଓ ଦେଶର ସୁଖ ଦୁଃଖରେ ବନ୍ଧା ହୋଇ ରହିଛି । କିନ୍ତୁ ଆମମାନଙ୍କ ମନ ଘର ଧରୁନାହିଁ । ଗ୍ରାମକୁ ଆମେମାନେ ନିଜର କରି ପାରୁନାହେଁ । ଗ୍ରାମର ଲୋକେ ନିଜଗ୍ରାମକୁ ନିଜର କରି ନ ଦେଖିଲେ ଗ୍ରାମର ଉନ୍ନତି କିପରି କିଏ କରିବ ? 'ଗ୍ରାମରେ ବ୍ଲକ୍ କିଛି କରିପାରୁନାହିଁ' ଏହିକଥା କହିବାରେ କିଛି ଅର୍ଥ ନାହିଁ । ଗ୍ରାମକୁ ଗଢ଼ିବାକୁ ହେବ । ଗ୍ରାମକୁ ନିଜର ମନେକରି ତାହାର ଉନ୍ନତି ସାଧନ କରିବାକୁ ଗ୍ରାମବାସୀମାନେ କିପରି କାର୍ଯ୍ୟ କରିବେ ତାହା ହିଁ ବ୍ଲକ୍ କର୍ମଯୋଜନାର ଲକ୍ଷ୍ୟ । ଦେଶର ଜନସାଧାରଣ ଏବଂ ବ୍ଲକ୍‌ର କର୍ମୀବୃନ୍ଦ କେହି ବ୍ଲକ୍‌ର ଲକ୍ଷ୍ୟକୁ ବୁଝି ନ ପାରିବା ଦୋଷରୁ ବିଭ୍ରାଟ ଦେଖା ଦେଉଛି । ଏଥିରେ ବ୍ୟକ୍ତିବିଶେଷଙ୍କୁ ଦୋଷ ଦେଇ ସମାଲୋଚନା କରିବା ଦ୍ୱାରା ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ପ୍ରତ୍ୟେକ ବ୍ୟକ୍ତି ଚିନ୍ତାକରୁ—ସେ କଣ କରୁଛି ଏବଂ କଣ ଭାବୁଛି । କାରଣ ପ୍ରତ୍ୟେକ ମନୁଷ୍ୟର କାର୍ଯ୍ୟ ଓ ଚିନ୍ତା କେବଳ ଆମ ଦେଶର ଭାଗ୍ୟକୁ ଗଠନ କରିବ ।

# ପଞ୍ଚବାର୍ଷିକ ଯୋଜନାର ମୂଳଦୁଆ

ପଞ୍ଚାୟତ ଶାସନ ପ୍ରତିଷ୍ଠା କରିବାକୁ ହେବ । ଏହା ଆମ ଦେଶରେ ନୂଆ କଥା ନୁହେଁ । ପୂର୍ବେ ଆମ ଦେଶରେ ପଞ୍ଚାୟତ ଶାସନ ଥିଲା । ଗ୍ରାମ-ଜୀବନକୁ ପୂର୍ଣ୍ଣମାତ୍ରାରେ ପଞ୍ଚାୟତ ନିୟନ୍ତ୍ରଣ କରୁଥିଲା । ଗ୍ରାମର କୌଣସି ବ୍ୟକ୍ତି କୌଣସି କଥାରେ ପଞ୍ଚାୟତ କଥାକୁ ଅମାନ୍ୟ କରୁ ନ ଥିଲେ । ବର୍ତ୍ତମାନ କାମ ହେଲା ଗ୍ରାମକୁ ନୂତନ କରି ଗଢ଼ିବା । ବାସଗୃହ, ଶିକ୍ଷା ଓ ସ୍ୱାସ୍ଥ୍ୟ ଏବଂ ରାସ୍ତା ଘାଟ ଇତ୍ୟାଦି ପ୍ରତ୍ୟେକ ବିଷୟର ପରିବର୍ତ୍ତନ ନ ଘଟିଲେ ନ ଚଳେ । ଏହା କିପରି ହେବ ଏବଂ କିଏ କରିବ ? ଗ୍ରାମ ପଞ୍ଚାୟତ ବସି ଏସବୁ ଉନ୍ନତି ସାଧନ କରିବାକୁ କଣ କରାଯିବ ତହିଁର ବିଚାର ଆଲୋଚନା କରି ଠିକ୍ କରିବେ । ଗ୍ରାମର ରୂପରେଖ ବଦଳାଇବାକୁ ଗ୍ରାମ ପଞ୍ଚାୟତ ବସି ବିଚାର କଲାବେଳେ ଗ୍ରାମ-ସେବକ ଓ ବ୍ଲକ ଅଫିସର୍ ଉକ୍ତ ବୈଠକରେ ଉପସ୍ଥିତ ରହି ବିଚାର ଆଲୋଚନାରେ ପରାମର୍ଶ ଦେବେ । ବୈଠକକୁ ଗ୍ରାମମାନଙ୍କରୁ ସବୁ ଶ୍ରେଣୀରୁ ଜାଣିବା ଶୁଣିବା ଲୋକ ବାଛି ଡାକିବାକୁ ପଡ଼ିବ । ଗ୍ରାମରୁ ସଂଗୃହୀତ ତଥ୍ୟ ଗ୍ରାମ-ସେବକ ପାଠ କରି ସମସ୍ତଙ୍କୁ ଶୁଣାଇବେ । ଏହିଠାରେ ପଞ୍ଚାୟତ ଅନ୍ତର୍ଗତ ପ୍ରତ୍ୟେକ ଗ୍ରାମପାଇଁ ପଞ୍ଚବାର୍ଷିକ କର୍ମଯୋଜନା ବିଚାର କରାଯାଇ ଗ୍ରହଣ କରାଯିବ । ପଞ୍ଚାୟତର ସବୁ ଗ୍ରାମରେ ପଢ଼ିବା ପାଇଁ ବାଳକ ବାଳିକାଙ୍କ ସଂଖ୍ୟାନୁସାରେ ପାଠଶାଳା ସ୍ଥାପନ, ଲୋକ ସଂଖ୍ୟାନୁସାରେ କୂଅ, ପୋଖରୀ ଖୋଳାଇ ପାଣିର ବ୍ୟବସ୍ଥା, କୃଷିର ଉନ୍ନତି କରିବା ପାଇଁ ବିଭିନ୍ନ ଉପାୟ ଅବଲମ୍ବନ, ସ୍ୱାସ୍ଥ୍ୟ, ରାସ୍ତା ଘାଟ, ବୃକ୍ଷରୋପଣ ଓ ଗୋ-ପାଳନ ଇତ୍ୟାଦି ବିଷୟରେ ବ୍ଲକ୍ ଅଫିସରଙ୍କ ଉପସ୍ଥିତି ଓ ପରାମର୍ଶ ଅନୁସାରେ କର୍ମଯୋଜନାର ବିଚାର କରାଯିବ । ଏହି ବିଚାର ଆଲୋଚନାରେ ପ୍ରତି ଗ୍ରାମର କାମକୁ ଦୃଷ୍ଟି

ହେଇ ପଞ୍ଚାୟତ ପାଇଁ ଗୋଟିଏ ପଞ୍ଚବାର୍ଷିକ କର୍ମଯୋଜନା ପ୍ରସ୍ତୁତ ହେବ । ଏହିପରି ପଞ୍ଚାୟତ ପାଇଁ ପଞ୍ଚବାର୍ଷିକ କର୍ମଯୋଜନା ପ୍ରସ୍ତୁତ କଲାବେଳେ ଶିଶୁବିଦ୍ୟାଳୟ, ଯୁବକ ସଂଘ, ମହିଳାମଣ୍ଡଳ, ପ୍ରୌଢ଼ଶିକ୍ଷା ଇତ୍ୟାଦି ବିଷୟର ଉପାଦେୟତା ଓ କାର୍ଯ୍ୟକ୍ରମ ବିଷୟରେ ଉପସ୍ଥିତ ଗ୍ରାମବାସୀମାନଙ୍କୁ ବ୍ଲକର କର୍ମଚାରୀମାନେ ବୁଝାଇ ଦେବେ । ବ୍ଲକ୍ ଅନ୍ତର୍ଗତ ପ୍ରତି ପଞ୍ଚାୟତ ପାଇଁ ଏହିପରି ପଞ୍ଚବାର୍ଷିକ କର୍ମଯୋଜନା ପ୍ରସ୍ତୁତ ହୋଇ ବ୍ଲକ୍ ଅଫିସରେ ପହଞ୍ଚିଲା ପରେ ବ୍ଲକ୍‌ର ପଞ୍ଚବାର୍ଷିକ କର୍ମଯୋଜନା ତିଆରି କରାଯିବ । ସମସ୍ତ ବ୍ଲକ୍‌ର କର୍ମଯୋଜନାକୁ ମୂଳଭିତ୍ତି କରି ଜିଲାପରିଷଦ ଜିଲାପାଇଁ ପଞ୍ଚବାର୍ଷିକ କର୍ମଯୋଜନା କରିବେ । ସମସ୍ତ ଜିଲାରୁ ଯୋଜନା ପାଇଲା ପରେ ପ୍ରଦେଶର ପଞ୍ଚ-ବାର୍ଷିକ କର୍ମଯୋଜନା ଷ୍ଟେଟ୍‌ର ବିଧାନ ସଭା ଆଲୋଚନା କରି ଗ୍ରହଣ କରିବେ । ପ୍ରତି ଷ୍ଟେଟ୍‌ର କର୍ମଯୋଜନା ପ୍ରତି ଲକ୍ଷ୍ୟ ରଖି ଭାରତର ପଞ୍ଚବାର୍ଷିକ କର୍ମଯୋଜନା ତିଆରି କରାଯାଇ ପାର୍ଲିଆ-ମେଣ୍ଟରେ ବିସ୍ତୃତ ଆଲୋଚନା କରାଯାଇ ତାହା ଗୃହୀତ ହେବ । ବର୍ତ୍ତମାନ ଆମ୍ଭ ଦେଶରେ ଯେଉଁ ପଞ୍ଚବାର୍ଷିକ କର୍ମଯୋଜନାର କାର୍ଯ୍ୟ କରାଯାଉଅଛି, ତାହା ଏହିପରି ଦେଶର ମୌଳିକ ଅଭାବକୁ ବିଚାର କରି ଗଢ଼ା ଯାଇଛି । କିନ୍ତୁ ତଳୁ ଅର୍ଥାତ୍ ଗ୍ରାମ ପଞ୍ଚାୟତର କାର୍ଯ୍ୟ ଯେପରି ହେବାର ସେପରି ହୋଇ ନ ପାରୁ ଥିବାରୁ ଭାରତର ପଞ୍ଚବାର୍ଷିକ ଯୋଜନା ଅବାସ୍ତବ ବୋଲି ମତାମତ ପ୍ରକାଶ ପାଉଛି । ଦେଶର ବାସ୍ତବ ପରିସ୍ଥିତି ସହିତ କୌଣସି ପ୍ରକାର ପ୍ରତ୍ୟକ୍ଷ ସମ୍ବନ୍ଧ ନ ଥାଇ, ପଞ୍ଚବାର୍ଷିକ କର୍ମଯୋଜନା କାଳ୍ପନିକ ହୋଇଛି ବୋଲି କୁହାଯାଉଛି । କିନ୍ତୁ ଗ୍ରାମପଞ୍ଚାୟତ ଠାରୁ ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ କର୍ମର ଯୋଗସୂତ୍ର ସ୍ଥାପନ କରି ଦେଶର ଅଭାବ ଅନାଟନକୁ ଦୂର କରିବା ପାଇଁ କର୍ମଯୋଜନା କଳ୍ପନା କରାଯାଇଛି । ବ୍ଲକ୍‌ର କାର୍ଯ୍ୟ-

କ୍ଷମକୁ ବଢ଼ାଇ ଦେଲେ ପଞ୍ଚାୟତ ବୈଠକରେ ଗ୍ରାମର ସମୃଦ୍ଧ ଉନ୍ନତି-ମୂଳକ କର୍ମର ଆଲୋଚନା ସହିତ ପାର୍ଲିଆମେଣ୍ଟରେ ଆଲୋଚିତ ହେଉଥିବା କର୍ମଯୋଜନାର ଭିତରେ ଯୋଗସୂତ୍ର ରକ୍ଷାକରି କାର୍ଯ୍ୟ ସବୁର କଳ୍ପନା କରି ଯାଇଅଛି ତାହା ଅକ୍ଳେଶରେ ବୁଝାପଡ଼ିବ ।

ପ୍ରଥମେ ବ୍ଲକ ସ୍ଥାପନ କରି ଗ୍ରାମ ସବୁର ସମୃଦ୍ଧ ଉନ୍ନତି ସାଧନ କରିବାକୁ ଯେଉଁ ସବୁ କାମ କରେଇବାକୁ ଉଦ୍ୟମ କରି ଯାଇଛି ତାହା ଗ୍ରାମ ଉପରେ ଲଦି ଦିଆ ଯାଉନାହିଁ । ବ୍ଲକ ସମିତିର ମତାମତ ଗ୍ରହଣ କରି ସମସ୍ତ କାମ ଗ୍ରାମରେ କରି ଯାଉଛି । ଗ୍ରାମବାସୀମାନଙ୍କ ସହିତ ବିଚାର ଆଲୋଚନା କରି ଗ୍ରାମ ପଞ୍ଚାୟତ ଯେଉଁ କାର୍ଯ୍ୟ କରିବାକୁ ପ୍ରସ୍ତାବ ଦେଉଛି, ତାହା ବ୍ଲକ୍ ଉନ୍ନୟନ ସମିତିରେ ଆଲୋଚିତ ହୋଇ ଗୃହୀତ ହେଲା ପରେ ଗ୍ରାମରେ କାମ କରିଯାଉଛି । ଗ୍ରାମ ପଞ୍ଚାୟତ ସବୁବେଳେ ନିୟମ ମାନି କାର୍ଯ୍ୟ କରୁନାହାନ୍ତି । ଗ୍ରାମବାସୀଙ୍କୁ ପଚାରି ବୁଝି କୌଣସି କାମ କରାଉ ନ ଥିବାରୁ ଗ୍ରାମବାସୀଙ୍କର କାର୍ଯ୍ୟରେ କୌଣସି ପ୍ରକାର ଆଗ୍ରହ ଓ ମମତା ଦେଖାଯାଉନାହିଁ । ସୁତରାଂ ଗ୍ରାମରେ ଆଶାନୁରୂପ ସାହାଯ୍ୟ ସହଯୋଗ ଲାଭ କରି କୌଣସି କାମ କରିବା କଠିନ ହୋଇ ପଡ଼ୁଛି । ମାଟିରେ ବୃକ୍ଷର ଚେର ରହି ମାଟିରୁ ଖାଦ୍ୟ ସଂଗ୍ରହ କଲେ, ଗଛ ବୃଦ୍ଧି ପାଇ ଫୁଲ ଫଳ ଧରେ । ଗ୍ରାମର ସମୃଦ୍ଧ ଉନ୍ନତି ସାଧନ କରି ପାରିବା ବୃକ୍ଷର ଚେର ଗ୍ରାମରେ ଅଛି । ଏହି ଚେର ଆହାର ଟାଣି ପାରୁ ନ ଥିବାରୁ ଫୁଲ ଫଳ ସୁନ୍ଦର ଓ ସୁସ୍ୱାଦୁ ହୋଇ ପାରୁନାହିଁ । ଗ୍ରାମବାସୀଙ୍କ ମନ ହେଲା ମୃତ୍ତିକା ଏବଂ ମନରେ ଯେଉଁ ଚିନ୍ତା ଓ ଭାବନା ତାହା ହିଁ ହେଉଛି ଚେର । ଗ୍ରାମବାସୀଙ୍କ ମନରେ ଗ୍ରାମର ଉନ୍ନତି କରିବାପାଇଁ ଭାବନା ଜାଗ୍ରତ

ନ ହେଲେ କୌଣସି କାର୍ଯ୍ୟ ଭଲ ଫଳ ଦେବ ନାହିଁ । ସମସ୍ତ କାର୍ଯ୍ୟ ଅବାସ୍ତବ ଏବଂ ଗ୍ରାମର ପରିସ୍ଥିତି ସହିତ ଖାପ ନ ଖାଇଲେ ଭଲ ଜଣା ପଡ଼ିବ । ସୁତରାଂ ଦେଶର ପଞ୍ଚବାର୍ଷିକ ଯୋଜନାକୁ ଅବାସ୍ତବ ଓ କପୋଳ-କଳ୍ପିତ ବୋଲି ବିଚାରିବା କେବଳ ଅବାସ୍ତବ ନୁହେଁ, ଏପରି ବିଚାର ବୁଦ୍ଧି ମଧ୍ୟ ଅବାଞ୍ଛିତ କଥା ।

## ପଞ୍ଚାୟତରାଜ୍ୟ ଗଠନ

ଗ୍ରାମ ପଞ୍ଚାୟତ ମାନଙ୍କ ମନରେ ଦାୟିତ୍ୱବୋଧ ଜ୍ଞାନ ଜାତ କରାଇବା ଉଦ୍ଦେଶ୍ୟରେ ଉନ୍ନତକର କର୍ମଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ପୂର୍ଣ୍ଣ ଅଧିକାର ସେମାନଙ୍କୁ ଦିଆଯାଇଛି । ପଞ୍ଚାୟତର କାର୍ଯ୍ୟକୁ ନିୟନ୍ତ୍ରିତ କରିବାକୁ ବ୍ଲକ ଅଫିସର କ୍ଷମତା ପାଇଛନ୍ତି । ପଞ୍ଚାୟତ ବିଭାଗ ସ୍ଥାପନ କରାଯାଇ ଦାୟିତ୍ୱସମ୍ପନ୍ନ ଉଚ୍ଚ କର୍ମଚାରୀ ନିଯୁକ୍ତ ହୋଇଛନ୍ତି । ପଞ୍ଚାୟତ ଗଠନ ଓ ପରିଚାଳନା ଆଦି କାର୍ଯ୍ୟକୁ ନିରୀକ୍ଷଣ କରି ଗ୍ରାମବାସୀମାନଙ୍କୁ ଉପଯୁକ୍ତ ବାଟ ଦେଖାଇବାକୁ ବ୍ୟବସ୍ଥା ଗ୍ରହଣ କରାଯାଇଛି । ଏହି କର୍ମଚାରୀମାନେ ପଞ୍ଚାୟତକୁ ସାହାଯ୍ୟ କରିବେ ଓ ଉପଯୁକ୍ତ ପରାମର୍ଶ ଦେବେ ; କାରଣ ପଞ୍ଚାୟତ ଦେଶର ମୂଳଦୁଆକୁ ଗଢ଼ିବ । ପଞ୍ଚାୟତମାନେ ନିଜ ନିଜ ଇଲାକା ପାଇଁ କର୍ମଯୋଜନା କରିବେ ଏବଂ ତାହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଦାୟିତ୍ୱ ମଧ୍ୟ ଗ୍ରହଣ କରିବେ । ଏଥିପାଇଁ ପଞ୍ଚାୟତର ସମସ୍ତ କାର୍ଯ୍ୟକୁ ବିଭିନ୍ନ ବିଭାଗରେ ବଣ୍ଟନ କରି, ପଞ୍ଚାୟତ କର୍ମକୁ ପରିଚାଳନା କରିବାକୁ ପଡ଼ିବ, ଦେଶର ଶାସନ ବ୍ୟବସ୍ଥାରେ ବିଭିନ୍ନ ବିଭାଗ ରହି ପ୍ରତ୍ୟେକ ବିଭାଗ ଜଣେ ମନ୍ତ୍ରୀଙ୍କ ସାହାଯ୍ୟରେ ପରିଚାଳିତ ହେଉଛି । ଗ୍ରାମ ପଞ୍ଚାୟତ କାମକୁ ସେହି ଢାଞ୍ଚରେ ପକାଇବାକୁ ହେବ । ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି

ଓ ବାଣିଜ୍ୟ ପାଇଁ ପଞ୍ଚାୟତରେ ଗୋଟିଏ କରି ସମିତି-
ପ୍ରତିବିଷୟ ପାଇଁ ଗଠନ କରାଯିବ । ପଞ୍ଚାୟତର ଜଣେ ପଞ୍ଚ
ଉକ୍ତ ସମିତିର ସଭାପତି ରହି ସମିତିର କାର୍ଯ୍ୟକୁ ପରିଚାଳନା
କରିବେ । ସବୁ ସମିତିର ସଭାପତିମାନେ ପଞ୍ଚାୟତ-ରାଜ୍ୟର ମୁଖ୍ୟକର୍ତ୍ତା
ହେବେ । ସାଧାରଣ ଗ୍ରାମବାସୀମାନେ ପଞ୍ଚାୟତ-ରାଜ୍ୟର ପାର୍ଲିଆମେଣ୍ଟ-
ସ୍ୱରୂପ କାର୍ଯ୍ୟ କରିବ । ଏହିପରି ଗ୍ରାମରେ ଦେଶରେ ପଞ୍ଚାୟତ ରାଜ୍ୟ
ଗଠନ କରିବାକୁ ହେବ । ପଞ୍ଚାୟତର ସେକ୍ରେଟାରୀ ଜଣେ ସରକାରୀ
କର୍ମଚାରୀରୂପେ ଅଫିସ ଦାୟିତ୍ୱ ଗ୍ରହଣ କରିବେ । ଦେଶର ପଞ୍ଚାୟତ
ବିଭାଗଦ୍ୱାରା ସେ ନିଯୁକ୍ତ ହୋଇ ପଞ୍ଚାୟତ ଅଫିସରେ କାର୍ଯ୍ୟ
କରିବେ । ତାଙ୍କ କାର୍ଯ୍ୟ ସନ୍ତୋଷଜନକ ନ ହେଲେ ସରପଞ୍ଚଙ୍କ
ରିପୋର୍ଟ ଅନୁସାରେ ବ୍ଲକ୍ ଅଫିସର ତଦନ୍ତ କରିବେ । ତାଙ୍କ ଦୋଷ-
ସାବ୍ୟସ୍ତ ହେଲେ ତାଙ୍କୁ କାମରୁ ଅନ୍ତର କରାଯିବ । ପଞ୍ଚାୟତ-
ଅଫିସ ପଞ୍ଚାୟତ ରାଜ୍ୟର ସଚିବାଳୟ ସ୍ୱରୂପ କାର୍ଯ୍ୟ କରିବ ।

## ସମବାୟ ସମିତି

ପଞ୍ଚାୟତ-ରାଜ୍ୟ ସ୍ଥାପନ କରି ସମବାୟ ସୂତ୍ରରେ କାର୍ଯ୍ୟ କରି-
ନ ଜାଣିଲେ, ପଞ୍ଚାୟତ-ରାଜ୍ୟ ଭୁଶୁଡ଼ି ପଡ଼ିବ । ସମବାୟ ସୂତ୍ର କହିଲେ-
କଣ ବୁଝାଏ, ତାହା ପ୍ରଥମେ ବୁଝିବା ଦରକାର । ମନୁଷ୍ୟର ଜୀବନ
ସମବାୟ ସୂତ୍ରରେ ଗଢ଼ି ହୋଇ ଉଠିଛି । ଜଣେ ବ୍ୟକ୍ତି, ତାର
ପରିବାର, ଗ୍ରାମ, ସମାଜ ଓ ଦେଶ ସବୁର ଉନ୍ନତି ସମବାୟ କର୍ମର
ପରିଣାମ ବ୍ୟତୀତ ଅନ୍ୟ କିଛି ନୁହେଁ । ଜଣେ ବ୍ୟକ୍ତି ଅନ୍ୟ କାହା
ଉପରେ ନିର୍ଭର ନ କରି ମୁହୂର୍ତ୍ତେ ସମୟ ଚଳି ପାରିବ ନାହିଁ । ଜଣେ
ଯାହା କରିବାକୁ ଅକ୍ଷମ ବୋଧ କରେ, ଆଉ କେତେ ଜଣଙ୍କ
ସହଯୋଗ ଓ ସାହାଯ୍ୟ ପାଇଲେ ଉକ୍ତ କାମ କରିବା କଠିନ ଜଣା-

ଯାଏନାହିଁ । ସୁତରାଂ ପରିବାରରେ, ଗ୍ରାମରେ ଓ ଦେଶରେ ସମସ୍ତେ ସମସ୍ତଙ୍କ ଉପରେ ନିର୍ଭର କରି ଚଳୁଛନ୍ତି, ଏହି ସତ୍ୟ ବୁଝି ନ ପାରିବା ଦୋଷରୁ ଆମ୍ଭେମାନେ ଅନ୍ଧାର ଭିତରେ ଧନ୍ଦାଳି ହେଉଛେ; ସୁତରାଂ ଆମ୍ଭର ସମସ୍ତ କାର୍ଯ୍ୟକୁ ସମବାୟ ସୂତ୍ରରେ କାର୍ଯ୍ୟ କରିବାକୁ ପଡ଼ିବ । ଆମ୍ଭର ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ ସମବାୟ ସୂତ୍ରରେ ନିୟନ୍ତ୍ରିତ କରିବା ଛଡ଼ା ଅନ୍ୟ ଗତି ନାହିଁ । ଗ୍ରାମର ପ୍ରତ୍ୟେକ ଅଭାବକୁ ସମବାୟ ସମିତି ସାହାଯ୍ୟରେ ଦୂରକରିବା ଏକମାତ୍ର ପନ୍ଥା । ପଞ୍ଚାୟତ ଗ୍ରାମର ସମୃଦ୍ଧ ଉନ୍ନତି ସାଧନ କରିବାକୁ କର୍ମଯୋଜନା ବାନ୍ଧିବେ—ଉକ୍ତ ଯୋଜନାର ଉପାଦାନ ସମବାୟ ସମିତି ପୂରଣ କରିବ । ବ୍ୟକ୍ତିଗତ ଚେଷ୍ଟାରେ ସବୁ କାମ କରିବା ଛଡ଼ା ଅନ୍ୟ ବାଟ ଆମ୍ଭମାନଙ୍କୁ ଦେଖା ପଡୁନାହିଁ । ତେଣୁ ସବୁବେଳେ ନିଜକୁ ଅସମର୍ଥ ବୋଧ କରୁଛେ । ଏହିପରି ଦୁର୍ବଳ ଓ ଅସମର୍ଥ ବୋଲି ଭାବିବା ଗୋଟିଏ ବ୍ୟାଧି । ଏହି ବ୍ୟାଧି କେବଳ ସମବାୟ ସମିତିର ସାହାଯ୍ୟରେ ଦୂର କରି ହେବ । ଆମଦେଶରେ ସମବାୟ ସମିତି ସବୁ ବିଦେଶୀ ସରକାରଙ୍କ ଅମଳରେ ଗଢ଼ା ଯାଇଥିଲା । କିନ୍ତୁ ସମବାୟ ସୂତ୍ରରେ ଜୀବନକୁ ନିୟନ୍ତ୍ରଣ କରିବା ପାଇଁ ଆନ୍ଦୋଳନ କରାଯାଇ ନ ଥିଲା । ଆମ୍ଭ ଦେଶର କୌଣସି ଉନ୍ନତି ସାଧନ କରିବା ଇଚ୍ଛା ନ ଥିବାରୁ ଧର୍ମକୁ ଆଖିଠାର ମାରିଲା ଭଳି ସମବାୟ ସମିତି ସ୍ଥାପନ କରାଯାଉଥିଲା । ଯେଉଁଠାରେ ସମବାୟ ସମିତି ଗଢ଼ାଯାଇଛି—ସେଠାରେ ଗ୍ରାମବାସୀମାନେ ଜମି-ବାଡ଼ି ବିକି ସର୍ବସ୍ୱାନ୍ତ ହୋଇଛନ୍ତି । ସମବାୟ ବିଭାଗର କର୍ମଚାରୀ-ମାନେ ହାକିମ ସାଜି କାର୍ଯ୍ୟ କରିବାକୁ ଶିଖିଥିଲେ । ତଥାକଥିତ ସମବାୟ ଆନ୍ଦୋଳନର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନ ଥିବାରୁ ତଦ୍ଦ୍ୱାରା ଏପରି ବିଭ୍ରାଟ ଘଟିଲା । ସବୁ କଥାରେ ସରକାରୀ କର୍ମଚାରୀଙ୍କ

ଉପରେ ନିର୍ଭର କରିବା ମଧ୍ୟ ଗୋଟିଏ ବଡ଼ ଦୋଷ । ବର୍ତ୍ତମାନ ଯେଉଁ ସମବାୟ ସମିତି ଗଢ଼ାଯିବ ତାହାର ଲକ୍ଷ୍ୟ ହେଉଛି ଦେଶକୁ ସମୃଦ୍ଧିଶାଳୀ କରି ଗଢ଼ିବା ଏବଂ ପଲ୍ଲୀ-ଜୀବନର ପ୍ରତ୍ୟେକ କାର୍ଯ୍ୟକୁ ସମବାୟ ସମିତିର ସାହାଯ୍ୟରେ ସଂପାଦନ କରିବା । କୌଣସି କାର୍ଯ୍ୟ କରିବାକୁ ଗ୍ରାମବାସୀମାନଙ୍କ ମଧ୍ୟରୁ ଯାହାର ଯାହା ଦରକାର ପଡ଼ିବ, ତାହା ସଂଗ୍ରହ କରିବାକୁ, କାହାରିକୁ ଚିନ୍ତିତ ହେବାକୁ ପଡ଼ିବନାହିଁ । କୃଷୀ ଜମିରେ ସାର ପିଡ଼ିଆ ନ ଦେଲେ କୃଷକରି ଲାଭବାନ ହୋଇପାରିବ ନାହିଁ । ଏହି ସାର ପିଡ଼ିଆ ପାଇବାକୁ କୃଷୀ ନିଜେ ଚେଷ୍ଟା କରୁଛି । ନିଜ ଚେଷ୍ଟାରେ ସମୟ ଅପବ୍ୟୟ ହେଉଛି, ପୁଣି ବେଶି ଛଟପଟରେ କାରବାର କରିବାକୁ ବାଧ୍ୟ ହେଉଛି । ବେଳେବେଳେ ହାତରେ ପଇସା ନ ଥିଲେ ଧାର ଉଦ୍ଧାର କରି ଟଙ୍କା ପାଇବାକୁ ଧନ୍ଦାଳ ହେଉଛି । ସମବାୟ ସମିତି ଗ୍ରାମରେ ସ୍ଥାପନ କଲେ ଏହି ପ୍ରକାର ଅସୁବିଧା ଦୁଃଖ କଷ୍ଟ ଗ୍ରାମରୁ ଦୂର କରିଦେବ । ଗ୍ରାମର ଜମିକୁ ହିସାବ କରି ଯେତେ ସାର ପିଡ଼ିଆ ଦରକାର ତାହା ସମବାୟ ସମିତି ସଂଗ୍ରହ କରିବ । ଗ୍ରାମର କୃଷୀମାନଙ୍କୁ ଧାର ସୂତ୍ରରେ କମ୍ବା ନଗଦ ବିକ୍ରି କରିବ । ପ୍ରତି ଗ୍ରାମ, ପଞ୍ଚାୟତ ଓ ବ୍ଲକ୍ ଉନ୍ନୟନ ସମିତି ଏବଂ ଜିଲ୍ଲା ପରିଷଦରେ ଏପରି ସମବାୟ ସୂତ୍ରରେ ସମିତି ଗଠନ କରି ଜନସାଧାରଣଙ୍କ ଆବଶ୍ୟକତାକୁ ପୂରଣ କରାଯିବ । ସବୁବେଳେ ଏବଂ ସବୁ କାର୍ଯ୍ୟରେ ଅନୁଷ୍ଠାନ ବ୍ୟକ୍ତିକୁ ସାହାଯ୍ୟ କରିବ । ନିଜକୁ, ପରିବାରକୁ ଓ ଗ୍ରାମକୁ ସମୃଦ୍ଧିଶାଳୀ କରି ଗଢ଼ିବା ପାଇଁ ଗ୍ରାମରେ କାହାରି କିଛି ଅଭାବ ରହିବ ନାହିଁ, କମ୍ବା କେହି ଆଉ ନିଜକୁ ଗରିବ, ଦୁଃଖୀ ଓ ନିଃସହାୟ ବୋଲି ଭାବି ପାରିବେ ନାହିଁ । ସମବାୟ ସୂତ୍ରରେ ସମସ୍ତ କାର୍ଯ୍ୟ କରିବାକୁ ମନ ନ'ଦେଲେ ଆମ୍ଭମାନଙ୍କ ଦୁଃଖ ଦୁର୍ଦ୍ଦଶା କଦାପି

ହୁଇ ହୋଇ ପାରିବ ନାହିଁ, ଏହା ଧ୍ରୁବ ସତ୍ୟ । ତେଣୁ ସମବାୟ ସୂତ୍ରରେ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଗୋ-ପାଳନ ଆଦି ଯାବତୀୟ କାର୍ଯ୍ୟ ଗ୍ରାମରେ କରାଯିବ । ସମବାୟ ସମିତିର ସଭ୍ୟ ହେବା ପାଇଁ ପ୍ରତ୍ୟେକ ଗ୍ରାମବାସୀର ଜନ୍ମଗତ ଅଧିକାର ଅଛି । ସମବାୟ ସମିତିର ବାସ୍ତୁ ସ୍ୱପ୍ନ ତଳେ ବାସ କରି ପାରିଲେ, ଅଚିରେ ଆମର ପରିବାର ଏବଂ ଗ୍ରାମର ରୂପ ବଦଳିଯିବ । ସୁତରାଂ ସମବାୟ ସମିତି ସ୍ଥାପନ କରିବା ବ୍ଲକର ପ୍ରଧାନ କାର୍ଯ୍ୟ । ଏଥିପାଇଁ କର୍ମଚାରୀ ବ୍ଲକର ଅଛନ୍ତି ।

## ଗ୍ରାମ୍ୟ ପାଠଶାଳା

ପଞ୍ଚାୟତ-ରାଜ୍ୟ ସ୍ଥାପନ କରି ସମବାୟ ସୂତ୍ରରେ ପଲ୍ଲୀ-ଜୀବନକୁ ଗଠନ କରିବା ବର୍ତ୍ତମାନ ଆମ୍ଭର ଲକ୍ଷ୍ୟ । ସୁତରାଂ ଗ୍ରାମକୁ ଗଢ଼ିବା ଏକମାତ୍ର କାର୍ଯ୍ୟ ଓ ଏକମାତ୍ର ଚିନ୍ତା । ସୁତରାଂ ଆମ୍ଭର ଶିକ୍ଷା, ଅର୍ଥାତ୍ ପାଠ ପଢ଼ିବା ବେଳୁ ଏହି ଚିନ୍ତା ପାଠଶାଳାର ବାଳକ ବାଳିକାଙ୍କ ମନକୁ ସ୍ପର୍ଶ କରିବା ଉଚିତ । ଏହି ଉଦ୍ଦେଶ୍ୟ ରଖି ଗ୍ରାମର ପାଠଶାଳା ଅଥବା ଶିକ୍ଷା ମନ୍ଦିରକୁ ଗଢ଼ିବା ଦରକାର । ଶିକ୍ଷା କହିଲେ ଯାହା ବୁଝାଯାଏ, ତାହା ବର୍ତ୍ତମାନ ଆମ୍ଭ ଦେଶର ଶିକ୍ଷା ପ୍ରଣାଳୀରେ ନାହିଁ । ଏହି ଶିକ୍ଷା ପ୍ରଣାଳୀକୁ ବିଦେଶୀ ଶାସକମାନେ ଆମ ଦେଶରେ ପ୍ରଚଳନ କରିଥିଲେ । ଦେଶ ସ୍ୱାଧୀନତା ପ୍ରାପ୍ତ ହେଲାପରେ ମଧ୍ୟ ସେହି ଶିକ୍ଷା ପ୍ରଣାଳୀରେ କୌଣସି ପରିବର୍ତ୍ତନ ଘଟି ନାହିଁ । ଶିକ୍ଷା ପ୍ରଣାଳୀର ଆମୂଳଚୂଳ ପରିବର୍ତ୍ତନ ଦରକାର କରୁଛି । ତାହା କରିବା ଏ ପର୍ଯ୍ୟନ୍ତ ସମ୍ଭବପର ହୋଇ ଉଠି ନାହିଁ । କିନ୍ତୁ ଗ୍ରାମର ରୂପ ବଦଳାଇବାକୁ ସବୁ ପ୍ରକାର ଚେଷ୍ଟା କରାଯାଉଥିଲା ବେଳେ ଗ୍ରାମ ପାଠଶାଳାର ପରିବର୍ତ୍ତନ କରିବାକୁ ଚିନ୍ତା କରିବା ଉଚିତ । କାରଣ ଗ୍ରାମର ବିଦ୍ୟାଳୟ ଗ୍ରାମର ଉନ୍ନତି

ସାଧନର ପ୍ରଧାନ ଅବଲମ୍ବନ । ନୂତନ ଭାରତର ମୂଳଦୁଆ ସ୍ୱରୂପ 'ଗ୍ରାମ'କୁ ଦୃଢ଼ କରିବାପାଇଁ ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କର୍ମ ଯୋଜନାରେ ପଞ୍ଚାୟତ-ରାଜ୍ୟ, ସମବାୟ ସମିତି ଏବଂ ପାଠଶାଳା ତିନୋଟି ଅନୁଷ୍ଠାନ ଗଠନ କରାଯାଉଛି । କିନ୍ତୁ ପାଠଶାଳାର ପାଠ ମନରେ ବଳ ଦେଉନାହିଁ । ତାହା ଆହୁରି ଦେଶରେ ଓ ସମାଜରେ ନୈରାଶ୍ୟ ଭାବ ସୃଷ୍ଟି କରିବାରେ ସାହାଯ୍ୟ କରୁଛି । ଦେଶର ଓ ସମାଜର ବର୍ତ୍ତମାନ ଅବସ୍ଥା ଦେଖିଲେ ବଡ଼ ନିରାଶ ହେବାକୁ ପଡ଼ୁଛି । ଆମ ଦେଶବାସୀଙ୍କ ଅନ୍ତର ପ୍ରଦେଶରେ ଅମର ଶକ୍ତି ବିଦ୍ୟମାନ ଅଛି । ସେହି ଶକ୍ତିକୁ ଜାଗ୍ରତ କରାଇ ପାରିଲେ ଭାରତର ଭାଗ୍ୟ ଉଜ୍ଜ୍ୱଳ ହୋଇ ଉଠିବ । ମହାତ୍ମା ଗାନ୍ଧୀ ସେହି ଶକ୍ତିର ସନ୍ଧାନ ପାଇ ଦେଶର ଅଗଣିତ ନରନାରୀଙ୍କ ହୃଦୟ ଓ ମନରେ ଅଦ୍ଭୁତ ଜାଗରଣ ସୃଷ୍ଟି କରିପାରିଲେ । ଆମର ନିରାଶ ହେବାର କିଛି କାରଣ ନାହିଁ । ଭାରତରେ ପଲ୍ଲୀ-ଜୀବନର ଗତିବିଧିକୁ ନିରୀକ୍ଷଣ କଲେ ଏକ ଅସାଧାରଣ ଜୀବନୀ ଶକ୍ତିର ପରିଚୟ ମିଳେ । ଭାଗ୍ୟ ଉପରେ ବିଶ୍ୱାସ ରଖି ଆମ ଦେଶର ପଲ୍ଲୀବାସୀ ଜୀବନ ନିର୍ବାହ କରୁଛି । ଯେ କୌଣସି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ବିଚଳିତ ନ ହେବାର ସହନଶୀଳ ଶକ୍ତି ଅନ୍ୟତ୍ର ଦେଖିବାକୁ ପାଇବା ବିରଳ । ଆମର ସାମାଜିକ ଜୀବନରେ ପରିବାର ହେଉଛି ବଡ଼ ଆକର୍ଷଣ । ଦାନ, ଧର୍ମ ଅତିଥି ସେବା କରିପାରିଲେ ପରିବାରର ଲୋକେ ସୁଖଶାନ୍ତି ଅନୁଭବ କରନ୍ତି । ଏଣୁ ଆମଦେଶରେ ଧର୍ମଶାଳା, ବାଟୋଇକୁ ଜଳ ଯୋଗାଇବାକୁ କୂଅ, ପୋଖରୀ ଖୋଳେଇବା ଏବଂ ବିଶ୍ରାମ ଦାନପାଇଁ ବୃକ୍ଷରୋପଣ ଇତ୍ୟାଦି କାର୍ଯ୍ୟ ପ୍ରସିଦ୍ଧ । ଜୀବମାତ୍ରକେ ଦୟା ଥିଲା ଆମର ସାମାଜିକ ଆଦର୍ଶ । ପଲ୍ଲୀ-ଜୀବନରେ ଏହି ଆଦର୍ଶର ପ୍ରତିବିମ୍ବ ଦେଖିବାକୁ ମିଳିବ । ପଲ୍ଲୀ ପାଠଶାଳାରେ ବାଳକ ବାଳିକାଙ୍କ

କୋମଳ ମନରେ ଏହି ଆଦର୍ଶର ଚିତ୍ର ପ୍ରତିଫଳିତ କରାଇ ନ ପାରିଲେ ଗ୍ରାମର ଭବିଷ୍ୟତ କିପରି ଉଜ୍ଜ୍ୱଳ ହେବ ? ସାମାଜିକ ଜୀବନର ଆଦର୍ଶ ବ୍ୟକ୍ତିଗତ ଜୀବନରେ ବିକାଶ କରିବା ପାଇଁ ଆମ୍ଭ ଦେଶରେ ବିଦ୍ୟାଭ୍ୟାସ କରୁଥିଲେ । ବର୍ତ୍ତମାନ ଆମ୍ଭ ଶିକ୍ଷାର ଆଦର୍ଶ ତଦନୁରୂପ ହେବା ଉଚିତ ।

ଗ୍ରାମ ପାଠଶାଳାରେ ଦେଶ ଗଠନର ଆଦର୍ଶ ବାଳକ ବାଳିକା ଅନୁସରଣ କରିପାରିଲା ଭଳି ଶିକ୍ଷାର ବ୍ୟବସ୍ଥା କରିବାକୁ ପଡ଼ିବ । ଗ୍ରାମର ବାଳକ ବାଳିକା ନିଜ ଗ୍ରାମର ଇତିହାସ, ଭୂଗୋଳ ଜାଣୁ ନାହାନ୍ତି । ଗ୍ରାମ ପୂର୍ବେ କିପରି ସ୍ୱଚ୍ଛଳ ଥିଲା ଏବଂ ଗ୍ରାମବାସୀ ଅତି ସୁଖରେ ଚଳୁଥିଲେ, ବର୍ତ୍ତମାନ ତାଁ ଗଣ୍ଡା ଭାଙ୍ଗିଯାଇ ଲୋକେ ଦୁଃଖ ଭୋଗ କରିବାର କାରଣ କ'ଣ ଇତ୍ୟାଦି ବିଷୟରେ ଗ୍ରାମ ପାଠଶାଳାରେ ଶିକ୍ଷାଦେବାକୁ ହେବ । ସମବାୟ-ସୂତ୍ର ଓ ଗ୍ରାମ ପଞ୍ଚାୟତ କଥା କେବଳ ଶିଖିବାକୁ ପାଇବେ ନାହିଁ, ତାହା କାର୍ଯ୍ୟରେ ପରିଣତ କରି ଦାୟିତ୍ୱ ଜ୍ଞାନ ଲାଭ କରିବା ପାଇଁ ସୁବିଧା କରାଯିବ । ସ୍କୁଲଘର ବଗିଚା ନିର୍ମଳ ରଖି ଫୁଲ ଫଳ ବଗିଚା କରିବା ଏବଂ ମଳମୂତ୍ର ତ୍ୟାଗ କରିବାକୁ ଆଦର୍ଶ ପାଇଖାନା ଓ ମୂତ୍ରଖାନା ତିଆରି କରିବା ପାଠଶାଳାରେ ଗ୍ରାମର ବାଳକ ବାଳିକା ଶିକ୍ଷାକରିବେ । ସମବାୟ ସୂତ୍ରରେ ବହିପତ୍ର, କାଳି, କଲମ ଖରିଦ ବିକ୍ରି କରିବାର ଦାୟିତ୍ୱ ଛାତ୍ର ଛାତ୍ରୀମାନଙ୍କୁ ଦିଆଯିବ । ଗ୍ରାମ ପାଠଶାଳା ବିଷୟରେ ସବୁକଥା ଉଲ୍ଲେଖ କରିବା ଏହି ଲେଖାର ଉଦ୍ଦେଶ୍ୟ ନୁହେଁ । ଗ୍ରାମକୁ ନୂତନ କରି ଗଠନ କରିବାକୁ ଯାହାସବୁ କରା-ଯାଉଛି, ତାହାର ମହତ୍ତ୍ୱ ପାଠ୍ୟ ବିଷୟରୁ ଅନୁଭବ କରି ପାରିଲେ ହେଲା ।

ଗଠନମୂଳକ କାର୍ଯ୍ୟକୁ ପ୍ରସ୍ତୁତ କରିପାରିବା ଭଳି ଗ୍ରାମ-ବିଦ୍ୟାଳୟକୁ ଗଠନ କରିବା ଚିନ୍ତା କଲାମାତ୍ରେ ପ୍ରଥମେ ଶିକ୍ଷକଙ୍କ କଥା ମନେ ପଡ଼ୁଛି । ଶିକ୍ଷକ-ଜୀବନ ସୁଖକର ବୋଧ ହେଉନାହିଁ । ଶିକ୍ଷକ କାମ ପେଟପୋଷା ବୃତ୍ତିରେ ପରିଣତ ହୋଇଛି । ସମାଜରେ ଶିକ୍ଷକଙ୍କର କୌଣସି ମର୍ଯ୍ୟାଦା ନାହିଁ କିମ୍ବା ଯାହା ଅର୍ଥ ମିଳୁଛି ସେଥିରେ ପେଟପୋଷା କୃତ୍ୟ ମଧ୍ୟ ଚଳୁନାହିଁ । ସମାଜ ତଥା ଦେଶର ଉନ୍ନତି ସାଧନ କରିବାରେ ଶିକ୍ଷକଙ୍କ କାର୍ଯ୍ୟ କେତେ ଗୁରୁତ୍ୱପୂର୍ଣ୍ଣ ତାହା କାହାରି ମନକୁ ସ୍ପର୍ଶ କରୁନାହିଁ । କୌଣସି ବୁଦ୍ଧିବୃତ୍ତି ଥିବା ଉଚ୍ଚ ଶିକ୍ଷିତ ଶିକ୍ଷକ କାମ କରିବାକୁ ମନ ବଳାଉନାହାନ୍ତି । କିନ୍ତୁ ଗ୍ରାମ୍ୟ-ଜୀବନର ବିକାଶ କାର୍ଯ୍ୟରେ ଗ୍ରାମ୍ୟ ପାଠଶାଳାକୁ ସଜୀବ ଅନୁଷ୍ଠାନରୂପେ ଗଢ଼ିବା ପାଇଁ ଉପଯୁକ୍ତ ଶିକ୍ଷକ ଆବଶ୍ୟକ । ଗ୍ରାମର ମଙ୍ଗଳ କାମନା ଶିକ୍ଷକଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ନ ରହିଲେ ପାଠଶାଳାକୁ ଗ୍ରାମ୍ୟ ଜୀବନର ମୂଳଦୁଆ ରୂପେ ସେ ଗଢ଼ିପାରିବେ ନାହିଁ । ଗ୍ରାମରେ ଶିକ୍ଷକଙ୍କର ଆସନ ସମସ୍ତଙ୍କ ଉପରେ ଏବଂ ସେ ସମସ୍ତଙ୍କର ଭକ୍ତି ଓ ଶ୍ରଦ୍ଧାର ପାତ୍ର ବିବେଚିତ ହୋଇପାରିବେ, ତାଙ୍କର ଅଭାବ ଅସୁବିଧା ଗ୍ରାମବାସୀମାନେ ଦୂର କରିପାରିବେ । ଏହିପରି ଅନୁକୂଳ ପରିସ୍ଥିତି ସୃଷ୍ଟି କରାଇ ପାରିଲେ, ଉପଯୁକ୍ତ ଶିକ୍ଷକଙ୍କର ଅଭାବ ଘଟିବ ନାହିଁ ।

ଗ୍ରାମ ପଞ୍ଚାୟତ ଗ୍ରାମର ଉନ୍ନତି ପାଇଁ ପଞ୍ଚବାର୍ଷିକ କର୍ମ ଯୋଜନା କଲାବେଳେ ଆଦର୍ଶ ପାଠଶାଳା ଗଠନ ତହିଁର ମୁଖ୍ୟ ବିଷୟ ରହିବ । ଶିକ୍ଷା ପ୍ରସାର ବ୍ଲକ୍‌ର କର୍ମଯୋଜନାରେ ଅନ୍ତର୍ଭୁକ୍ତ ବିଷୟ । ସୁତରାଂ ବ୍ଲକ୍ କର୍ମଗୁରୁମାନେ ଇଚ୍ଛାକଲେ ପଞ୍ଚାୟତର ସାହାଯ୍ୟରେ ଗ୍ରାମବାସୀମାନଙ୍କୁ ବୁଝାଇ ଆଦର୍ଶ ପାଠଶାଳା ସ୍ଥାପନ

କରିପାରିବେ । ବ୍ଳକ୍‌ର ସାମାଜିକ ଶିକ୍ଷାଦାତାଙ୍କ କର୍ତ୍ତବ୍ୟ ଗ୍ରାମରେ ଆଦର୍ଶ ପାଠଶାଳା ଗଠନ କରିବା । ବ୍ଳକ୍ ଅଫିସରଙ୍କର ଏଥିପ୍ରତି ଦୃଷ୍ଟି ରହିବା ଦରକାର । କାରଣ ବ୍ଳକର ସମସ୍ତ କାର୍ଯ୍ୟର ଦାୟିତ୍ୱ ତାହାଙ୍କ ଉପରେ ନ୍ୟସ୍ତ କରାଯାଇଛି ; ସୁତରାଂ ପାଠଶାଳାକୁ ଗ୍ରାମ-ଗଠନ କାର୍ଯ୍ୟରେ ମୂଳପିଣ୍ଡ କରି କରି ଗଢ଼ିବା କଷ୍ଟକର ନୁହେଁ ।

## ଯୁବକ ସଂଘ

ପଲ୍ଲୀ-ଜୀବନକୁ ଗଢ଼ିବା ପାଇଁ ପଲ୍ଲୀର ଯୁବଶକ୍ତିକୁ ଗଠନ କରିବା ଦରକାର । ଗ୍ରାମରେ ଶିକ୍ଷିତ ଓ ଅଶିକ୍ଷିତ ହୋଇ କେତେ ଯୁବକ ଅଛନ୍ତି । କେହି ଜୀବିକା ଅର୍ଜନର ଉପାୟ ଅନ୍ୱେଷଣରେ, କେହି ଅବା ଅନ୍ୟ କୌଣସି ପ୍ରକାର ବୃତ୍ତି ବାଡ଼ରେ ଲିପ୍ତ । ଏହି ଯୁବକମାନଙ୍କୁ ସଂଗଠିତ କରି କାମରେ ଲଗାଇ ପାରିଲେ, ଅସମ୍ଭବ ସମ୍ଭବ ହୋଇ ପାରିବ । ଯୁବକ ସଂଘ ଗଠନ କରି ଗ୍ରାମର ସମୂହ ଉନ୍ନତିମୂଳକ କାର୍ଯ୍ୟରେ ବ୍ୟବହାର କରିବାର କଥା । ସୁତରାଂ ପ୍ରତି ପଞ୍ଚାୟତରେ ଏବଂ ପ୍ରତି ଗ୍ରାମରେ ଯୁବକ ସଂଘ ଗଢ଼ିବାକୁ ହେବ । ଗ୍ରାମର ପ୍ରତ୍ୟେକ ଯୁବକ ସଂଘରେ ଯୋଗ ଦେବା ବ୍ଳକ୍‌ରେ ଯୁବକସଂଘ ଗଢ଼ା ଯାଉଛି ; କିନ୍ତୁ ଏହି ଯୁବକସଂଘରେ ଜୀବନ ନାହିଁ । ଯୁବକ ସଂଘର କିଛି ଆଦର୍ଶ ରହୁନାହିଁ । ସୁତରାଂ ଗ୍ରାମର ଯୁବକ ତହିଁରେ ଯୋଗ ଦେବାକୁ ଆଗ୍ରହ ପ୍ରକାଶ କରୁନାହାନ୍ତି । ଯେଉଁ ସଂଗଠନରେ ପ୍ରାଣ ନାହିଁ, ତାହା କିପରି ଗ୍ରାମର ଉନ୍ନତିକର କାର୍ଯ୍ୟରେ ସାହାଯ୍ୟ କରିପାରିବ ? ଗ୍ରାମର ଉନ୍ନତି କରିବା ଚିନ୍ତା ଯୁବକ ମନରେ ନାହିଁ । ଏହି ଚିନ୍ତା କିପରି ଯୁବକ ମନରେ ଜାଗ୍ରତ ହେବ ତାହାକୁ ଲକ୍ଷ୍ୟ ରଖି ଯୁବକ ସଂଘ ଗଠନ କଲେ ଯୁବକ ନିଷ୍ଠାପୂର୍ଣ୍ଣ ଅନୁପ୍ରାଣିତ ହେବେ । ଯୁବକ

ସଂଘ ଅନୁପ୍ରାଣିତ ହୋଇ କାର୍ଯ୍ୟ କରିବାକୁ ଅଗ୍ରସର ହେଲେ ଗ୍ରାମର ରୂପରେଖ ବଦଳି ଯିବ । ଯୁବକ ସଂଘରେ ନାମ ଲେଖାଇଲେ ମାତ୍ରକେ ପ୍ରତ୍ୟେକ ଯୁବକର ମନରେ ସାହସ ଓ ବଳ ସଞ୍ଚାର ହୋଇ ପାରିବା ଭଳି କାର୍ଯ୍ୟ ନିର୍ଘଣ୍ଟ ସ୍ଥିର କରିବାକୁ ହେବ । ଯୁବକସଂଘର କୌଣସି ଯୁବକ ଅଶିକ୍ଷିତ ରହିବ ନାହିଁ, ତାର ଅଭାବ ଦୂର କରି ପାରିବ, ଭବିଷ୍ୟତ ଉଜ୍ଜ୍ୱଳ ହେବ । ଜୀବିକା ଉପାର୍ଜନ କରିବାର ବାଟ ଖୋଜିବାକୁ ପଡ଼ିବ ନାହିଁ । କୌଣସି ପ୍ରକାର ଆପଦ ବିପଦ କିମ୍ବା ରୋଗବ୍ୟାଧି ଘଟିଲେ, ସେ ନିଜକୁ ଅସହାୟ କିମ୍ବା ଅସମର୍ଥ ବିଚାରିବ ନାହିଁ । ସବୁବେଳେ ଏବଂ ସବୁ ବିଷୟରେ ଅନୁଷ୍ଠାନ ହିସାବରେ ଯୁବକ ସଂଘ ତାକୁ ସାହାଯ୍ୟ ସହଯୋଗ ଦେବ । ଏହା ହେଲେ ଯୁବକ ସଂଘ ଜୀବନ୍ତ ଅନୁଷ୍ଠାନ ରୂପେ ଗଢ଼ି ହୋଇ ଉଠିବ । ବ୍ଲକ୍ ଅନ୍ତର୍ଗତ ପ୍ରତି ଗ୍ରାମରୁ ଯୁବକ ବାଛି ପ୍ରତି ପଞ୍ଚାୟତରେ ଅନ୍ତତଃ ଏପରି ଯୁବକ ସଂଘ ଗଢ଼ିବାକୁ ହେବ । ଯୁବକ ସଂଘକୁ ଏହିପରି ଗଢ଼ିବା ଅସମ୍ଭବ ନୁହେଁ । ଦେଶକୁ ପରାଧୀନତା ପାଶରୁ ମୁକ୍ତକରି ତାକୁ ସମୃଦ୍ଧିଶାଳୀ କରି ଗଢ଼ିବାକୁ ଆମେମାନେ କାର୍ଯ୍ୟ କରୁଛେ, ଏହି ଭାବନା ମନରେ ଥିଲେ ବାଟ ଦେଖାଯିବ । ଉପାୟ ସହଜରେ ଅବଲମ୍ବନ କରିହେବ । ଯୁବକ ସଂଘ ଦ୍ୱାରା ପଲ୍ଲୀଜୀବନ ଶୃଙ୍ଖଳିତ ହୋଇ ଉଠିବ । ପଲ୍ଲୀଗ୍ରାମରୁ ଅନ୍ୟାୟ ଜୁଲମ ଲୋପ ପାଇବ । ଚୋର, ଡକାୟତ ଇତ୍ୟାଦି ଭୟ ବିପଦରୁ ଗ୍ରାମ ଅତି ଅକ୍ଳେଶରେ ରକ୍ଷା ପାଇପାରିବ । ଗ୍ରାମରେ ଶୋଷଣ ଓ ସ୍ୱେଚ୍ଛାଚାରିତା ଆଉ ଦେଖିବାକୁ ମିଳିବ ନାହିଁ । ଏହିପରି ଆଦର୍ଶ ଯୁବକ ସଂଘ ଗଢ଼ିବାକୁ ଅର୍ଥ ଦରକାର । କିନ୍ତୁ ଏହି ଅର୍ଥ ସଂଘ ଅର୍ଜନ କରିବାର ବାଟ ଅନେକ ଅଛି । ପ୍ରତ୍ୟେକ ଯୁବକ ସଂଘର ଶ୍ରମଦାନ ବାଧ୍ୟତାମୂଳକ ହେବ । ଶ୍ରମ ହେଉଛି ଅର୍ଥ । ସଂଘର ଶ୍ରମଦାନରୁ ପ୍ରଚୁର ଅର୍ଥ

ମିଳିବ । ସୁତରାଂ ଯୁବକ ସଂଘ ଗଢ଼ି ତାହାକୁ ପରିଚାଳନା କରିବାର ବାଟ ଦେଖାଇ ପାରିଲେ ଆଦର୍ଶ ଯୁବକ ସଂଘ ଗଢ଼ିବା ଅତି ସହଜ । ଦେଶକୁ ନୂତନ କରି ଗଢ଼ିବା ପାଇଁ ମନ ଓ ହୃଦୟରେ ଆବେଗ ଥିଲେ କୌଣସି କାର୍ଯ୍ୟ କଠିନ ଜଣାପଡ଼େ ନାହିଁ । ସେହି ଭାବନା ଅଭାବ ଥିଲେ ସବୁ ଅସମ୍ଭବ । ଦେଶର ଯେ ବହୁବିଧ ଅଭାବ ମଧ୍ୟରେ ଏହି ଅଭାବ ହେଉଛି ବଡ଼ ଅଭାବ । ଏହି ଅଭାବ ଦୂର କରିବାକୁ ବ୍ଲକ୍ କାର୍ଯ୍ୟର ପରିକଳ୍ପନା ।

## ଗ୍ରାମଗୋଷ୍ଠୀ ଅର୍ଥାତ୍ ବ୍ଲକ୍ କର୍ମଯୋଜନା କିପରି ଜନ୍ମ ଲଭିଲା

ଗ୍ରାମର ସମୂହ ଉନ୍ନତିମୂଳକ କର୍ମଯୋଜନାର ପରିକଳ୍ପନା ପୃଥିବୀରେ ଗୋଟିଏ ନୂତନ କଥା । ଏହା ଭାରତରେ କିପରି ବିକାଶ ଲଭ କରିଛି ସେ ବିଷୟରେ ସାମାନ୍ୟ ଆଭାସ ଦେଉଛି ।

ଭାରତ ସ୍ୱାଧୀନତା ଲଭିଲା ସତ୍ୟ ; କିନ୍ତୁ ଦେଶ ଦୁଇଖଣ୍ଡ ହୋଇ ଭାଗ ହୋଇଗଲା । ଭାରତ, ପାକିସ୍ଥାନ ଦୁଇଟି ରାଜ୍ୟ ହେଲା । ମୁସଲମାନ ଭାଇମାନେ କଳି ଲଗାଇ ଦେଶକୁ ବଣ୍ଟନ କରିଥିଲେ । ତଦ୍ୱାରା ହିନ୍ଦୁ ମୁସଲମାନ ଦ୍ୱନ୍ଦ୍ୱ ଭୟଙ୍କର ଆକାର ଧାରଣ କରିଥିଲା । ଲକ୍ଷ ଲକ୍ଷ ହିନ୍ଦୁ ପାକିସ୍ଥାନ ଛାଡ଼ି ଭାରତକୁ ପଳାଇ ଆସିଲେ । ସେମାନଙ୍କ ପାଇଁ ପ୍ରତ୍ୟହ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଲା । ସେମାନେ ବସିରହିଲେ । କିଛି କାମ କରିବାକୁ ଇଚ୍ଛାକଲେ ନାହିଁ । ସବୁବେଳେ ନିଜ ଭିତରେ କଳହ ଏବଂ ସରକାରଙ୍କ ନିନ୍ଦା ହେଲା ସେମାନଙ୍କ ଏକମାତ୍ର କାର୍ଯ୍ୟ । ସେମାନେ ଦେଶକୁ ଆଜି ଚିହ୍ନିଲେ ନାହିଁ । ଦେଶର ଭଲ ମନ୍ଦ ଚିନ୍ତା

ସେମାନଙ୍କ ମନରୁ ଉଭେଇ ଗଲା । ଏହା ଏକ ଭୟଙ୍କର ପରିସ୍ଥିତି ।
ଏହି ପରିସ୍ଥିତିର ଶୀଘ୍ର ପରିବର୍ତ୍ତନ ଆଣିବାକୁ ଯେଉଁ କର୍ମଯୋଜନା
କାର୍ଯ୍ୟକାରୀ କରାଗଲା ତାହା ହିଁ ହେଉଛି ଆମ୍ଭର ବର୍ତ୍ତମାନ ବ୍ଲକ୍
କାର୍ଯ୍ୟ । କାରଣ ଉକ୍ତ କର୍ମଯୋଜନା କାର୍ଯ୍ୟକାରୀ କରାଗଲାବେଳେ
ବୁଝା ପଡ଼ିଲା ଯେ ସମଗ୍ର ଭାରତର ପଲ୍ଲି-ଜୀବନରେ ଗୋଟିଏ ପ୍ରକାର
କର୍ମସ୍ରୋତ ପ୍ରବାହିତ ନ ହେଲେ ଦେଶର ମୂଳଦୁଆ ଦୃଢ଼ ହେବ
ନାହିଁ । ଏହି ଭାବନା ଏବଂ ଅନୁଭୂତିରୁ ବ୍ଲକ୍ ଜନ୍ମଲାଭ କରିଛି ।
ଏଥିପାଇଁ ବ୍ଲକ୍ ଅନ୍ତର୍ଗତ ଗ୍ରାମମାନଙ୍କରେ ଜନ୍ମଠାରୁ ମରଣ
ପର୍ଯ୍ୟନ୍ତ ସବୁ ଅବସ୍ଥାରେ ଗ୍ରାମବାସୀ ନିଜର ଉନ୍ନତ ଜୀବନ
ଗଢ଼ିବାକୁ ସମର୍ଥ ହେବା ଭଳି ବିଭିନ୍ନ ସଂଗଠନ ଗଢ଼ିବାର ଉଦ୍ୟମ
କରାଯାଉଛି ।

## ମହିଳା ମଣ୍ଡଳ

ଯୁବକ ସଙ୍ଘ ପରି ମହିଳା ମଣ୍ଡଳ ଗଢ଼ିବାକୁ ହେବ । ଆମ
ସମାଜରେ ପରଦା ପ୍ରଥା ଅଛି । ସ୍ତ୍ରୀମାନେ ଘରୁ ବାହାରକୁ
ବାହାରିବାକୁ କଟକଣା ରହିଛି । ଘରୁ ବାହାରକୁ ବାହାରିଲେ ମଧ୍ୟ
ନିର୍ଭିକ ଭାବରେ ସାଧାରଣ କର୍ମକ୍ଷେତ୍ରରେ କାର୍ଯ୍ୟ କରିବାକୁ ମନରେ
ଭାବନା ଆସୁନାହିଁ । କାହାରି କାହାରି ମନରେ ବାହାରକୁ ବାହାରି କାମ
କରିବାକୁ ଇଚ୍ଛାଥିଲେ ମଧ୍ୟ ସେପରି କରିବାକୁ ସାହସ କରୁନାହାନ୍ତି ।
ପୂର୍ବେ ଆମ ଦେଶରେ ସ୍ତ୍ରୀମାନଙ୍କ ଆସନ ସମାଜରେ ଅତି ଉଚ୍ଚରେ
ଥିଲା । କାଳକ୍ରମେ ନାନାପ୍ରକାର ଅବସ୍ଥାରେ ପଡ଼ି ସାମାଜିକ ଜୀବନରେ
ବହୁ ବିଭ୍ରାଟ ଘଟିଛି । ବିଦେଶୀ ଶକ୍ତିର ବାରମ୍ବାର ଦେଶ ଆକ୍ରମଣ
ଓ ଶାସନ ଫଳରେ ଆତ୍ମରକ୍ଷା ପାଇଁ ସମାଜିକ ବନ୍ଧନକୁ ଟାଣ କରା-
ଯାଇଛି । କିନ୍ତୁ ଦେଶ ସ୍ୱାଧୀନ ହେବାପରେ ପ୍ରଜା-ଶାସନ ପ୍ରଚଳନ

କରାଯାଇଛି । ଲୋକସଂଖ୍ୟାରେ ସ୍ତ୍ରୀମାନଙ୍କ ସଂଖ୍ୟା ଅଧେ । ଦେଶର ଅଧେ ଲୋକ ଦେଶ ବିଷୟରେ କିଛି ଜାଣିବେ କିମ୍ବା ଶୁଣିବେ ନାହିଁ । ସ୍ତ୍ରୀଜାତି ସମାଜର ମେରୁଦଣ୍ଡ । ସେମାନେ ଜନ୍ମ ଦେଇ ପାଳନ କରୁଛନ୍ତି । ସେମାନଙ୍କୁ ଘରେ ରଖି କିଛି ଜାଣିବାକୁ କିମ୍ବା ଶିଖିବାକୁ ନ ଦେଲେ ଦେଶର ଦୁଃଖ, ଦୁର୍ଦ୍ଦଶା ଦୂର ହୋଇପାରିବ ନାହିଁ । ଭାରତ ପୃଥିବୀରେ ଉଚ୍ଚ ଆସନ ଗ୍ରହଣ କରି ପାରିବ ନାହିଁ । ଜନ୍ମବେଳୁ ଯେ ମନୁଷ୍ୟକୁ ଗଢ଼ିବ ସେ ଦେଶର ମହତ୍ତ୍ୱ ଅନୁଭବ କରି ନ ପାରିଲେ, ଦେଶଗଢ଼ା କାମ ହୋଇପାରିବ ନାହିଁ । ସୁତରାଂ ଯୁବକ ସଂଘ ଅପେକ୍ଷା ମହିଳା ମଣ୍ଡଳର ସଂଗଠନ ଅଧିକ ଜରୁରୀ କାର୍ଯ୍ୟ । ମହିଳା ମଣ୍ଡଳ ପ୍ରତିଗ୍ରାମରେ ଗଢ଼ିବାକୁ ହେବ । ମହାତ୍ମା ଗାନ୍ଧୀ ଦେଶରେ ରାମରାଜ୍ୟ ଗଢ଼ିବାକୁ କହୁଥିଲେ । ଦେଶରେ ସ୍ୱରାଜ୍ୟ ଗଢ଼ାଯାଇଛି, ରାମ ରାଜ୍ୟ ହୋଇ ନାହିଁ । ରାମ ରାଜ୍ୟ ଗଢ଼ିବାକୁ ଉଦ୍ୟମ ଚାଲିଛି । ଆମ୍ଭର ସମସ୍ତ ପ୍ରକାର କାର୍ଯ୍ୟ ଓ ଚିନ୍ତା ଦେଶରେ ରାମରାଜ୍ୟ ଗଢ଼ିବାପାଇଁ । ଏହି କଥାଟି ମନେ ରଖିଲେ ସବୁ କାର୍ଯ୍ୟରେ ଆନନ୍ଦ ମିଳିବ ଏବଂ ସେହି କାର୍ଯ୍ୟ ଫଳପ୍ରଦ ମଧ୍ୟ ହୋଇପାରିବ । ସୁତରାଂ ଆଦର୍ଶ ମହିଳା ମଣ୍ଡଳ ଗଠନ କାର୍ଯ୍ୟ କଠିନ ହେବ ନାହିଁ । ମହିଳା ମଣ୍ଡଳ ଗଢ଼ି ସେମାନଙ୍କ ପାଇଁ ଯେଉଁ କର୍ମଯୋଜନା ବନ୍ଧା ଯାଇଛି ତାହାକୁ କାର୍ଯ୍ୟରେ ପରିଣତ କରି ପାରିଲେ ଗ୍ରାମ ଜୀବନରେ ଅଦ୍ଭୁତ ପରିବର୍ତ୍ତନ ଦେଖାଯିବ । ଗ୍ରାମରେ ଯାହାକିଛି କାମ ହେଉଛି ଅବା ହେବାର ଅଛି ସେ ସବୁରେ ମହିଳା ମଣ୍ଡଳର ଘନିଷ୍ଠ ସଂପର୍କ ରହିବା ଦରକାର । ପଞ୍ଚାୟତ ଶାସନ, ସମବାୟ ସମିତି, ବିଦ୍ୟାଳୟ ଆଦି ଅନୁଷ୍ଠାନ ଏବଂ ଶିଶୁ ବାଡ଼ି, ଯୁବକ ସଂଘ ଓ ପ୍ରୌଢ଼ ଶିକ୍ଷା, କୁଟୀର ଶିଳ୍ପ ଇତ୍ୟାଦି ସଂଗଠନ ବିଷୟରେ ମହିଳା ମଣ୍ଡଳର ପ୍ରତ୍ୟକ୍ଷ

ଜ୍ଞାନ ଲାଭ କରିବା ଦରକାର । ତାହା ନ ହେଲେ କୌଣସି କାମ ଫଳପ୍ରଦ ହୋଇ ପାରିବ ନାହିଁ । ମହିଳା ମଣ୍ଡଳ ଗଠନ କରି ଗ୍ରାମର ମହିଳାମାନଙ୍କ ମନରେ ଏହିସବୁ ଜାଣିବାକୁ ଭାବନା ଜାଗ୍ରତ କରାଇବାକୁ ହେବ । ଏଥିପାଇଁ ବ୍ୟବସ୍ଥା ଅଛି । ମହିଳା ମଣ୍ଡଳ ଗ୍ରାମର ମହିଳାମାନଙ୍କ ମଧ୍ୟରେ ନବ ଜାଗରଣ ଅର୍ଥାତ୍ ଘର ଏବଂ ପରିବାରର ପ୍ରତ୍ୟେକ କାମକୁ ଦେଶର ଉନ୍ନତିମୂଳକ କର୍ତ୍ତବ୍ୟ ହିସାବ କାର୍ଯ୍ୟ କରିବେ ଏବଂ ଗ୍ରାମର ସବୁ କାର୍ଯ୍ୟରେ ଏବଂ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ଜୀବନରେ ସେମାନଙ୍କର କର୍ତ୍ତବ୍ୟ କର୍ମର ପ୍ରଭାବ ପଡ଼ିବ । ଗ୍ରାମଟି ଗୋଟିଏ ପରିବାର ପରି ସୁଖ ଦୁଃଖରେ ଭାଗୀ ହୋଇ ପରସ୍ପରର ଉନ୍ନତି ପାଇଁ ଯେଉଁ କାର୍ଯ୍ୟ କରାଯିବ, ତାହା ମହିଳା ମଣ୍ଡଳ ଜରିଆରେ ଶିଖିପାରିବେ ଏବଂ ପୁରୁ ପଲ୍ଲୀର ମହିଳାଙ୍କ ମନରେ ଏପରି କର୍ତ୍ତବ୍ୟଜ୍ଞାନ ଏବଂ ଦେଶପ୍ରତି ମମତା ଜାଗ୍ରତ ହେବ, ଏହି ଉଦ୍ଦେଶ୍ୟରେ ମହିଳା ମଣ୍ଡଳ ଗଠନର ଆବଶ୍ୟକ ।

## ବ୍ଲକ୍‌ର ଲକ୍ଷ୍ୟ ଉତ୍ପାଦନ ଶକ୍ତିର ବିକାଶ ସାଧନ

ସ୍ୱାଧୀନତା ଲାଭ ପରେ ଦେଶକୁ ଗଢ଼ିବା ହେଲା ଏକମାତ୍ର କାର୍ଯ୍ୟ । ଦେଶକୁ ଗଢ଼ିବା କାମ ଦେଶବାସୀ କରିବେ । ସୁତରାଂ ଦେଶର ପ୍ରତ୍ୟେକ ନରନାରୀ ଦେଶ ଗଢ଼ିବା ପାଇଁ ସୁବିଧା ସୁଯୋଗ ପାଇପାରିବା ଭଳି କର୍ମ ଯୋଜନା କରିବାକୁ ପଡ଼ିଥିଲା । ଗ୍ରାମଗୋଷ୍ଠୀ ଯୋଜନାର ଲକ୍ଷ୍ୟ ସମସ୍ତେ ମିଳିମିଶି ଦେଶ କାମ କରିବେ । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ କେହି ବସିବ ନାହିଁ କାମକରିବାକୁ ସୁବିଧା ପାଇ ପାରିଲା ନାହିଁ ବୋଲି । ମୂଳରୁ ଏହା ହିଁ ଥିଲା ଯୋଜନାର ଲକ୍ଷ୍ୟ ; କିନ୍ତୁ ସେ ଲକ୍ଷ୍ୟ ବର୍ତ୍ତମାନ ବଦଳି ଗ୍ରାମର ସମୃଦ୍ଧ ଉନ୍ନତି ସାଧନ କରିବା

ହୋଇଛି ପ୍ରଧାନ କାମ । ସୁତରାଂ ବ୍ଲକ୍ ଅନ୍ତର୍ଗତ ଗ୍ରାମସବୁରେ ଯାହା କିଛି ସମ୍ବଳ ଅଛି, ସେ ସବୁକୁ ସଂଗଠିତ କରି ଗ୍ରାମର ସମୃଦ୍ଧ ଉନ୍ନତି-ମୂଳକ ଯୋଜନାକୁ ସଫଳ କରିବାକୁ ହେବ । ଧନ ଜନ, ଓ ମନ ସବୁ ଏକତ୍ର ମିଶାଇ କାମ କରାଯିବ । ଦେଶର ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟକୁ ତିନି ଭାଗରେ ବଣ୍ଟନ କରାଯାଇଛି । ସମସ୍ତ ଦେଶପାଇଁ ଆବଶ୍ୟକ ବୋଧ ହେଉଥିବା ସର୍ବ ସାଧାରଣ କାର୍ଯ୍ୟସବୁ କେନ୍ଦ୍ର ସରକାର କରିବେ । ଷ୍ଟେଟ ପାଇଁ ଷ୍ଟେଟ କରିବ ଏବଂ ସ୍ଥାନୀୟ ଅର୍ଥାତ୍ ଗ୍ରାମର କାମ ଗ୍ରାମବାସୀ କରିବେ । ଉତ୍ପାଦନ ଉପରେ ସମସ୍ତଙ୍କ ଜୀବନ ମରଣ ସମସ୍ୟା ନିର୍ଭର କରୁଛି । ଦେଶରେ ଉତ୍ପାଦନ ନହେଲେ ଦେଶ ସମୃଦ୍ଧିଶାଳୀ ହୋଇ ପାରିବ ନାହିଁ । ବିଦେଶୀ ଶାସନ ଆମ୍ଭ ଦେଶରେ ଉତ୍ପାଦନ ଶକ୍ତିକୁ ଚାପି ରଖିଥିଲା । ସ୍ୱାଧୀନ ଭାରତରେ ସେହି ଶକ୍ତିକୁ ଜାଗ୍ରତ କରାଇବାକୁ ପଞ୍ଚବାର୍ଷିକ କର୍ମ ଯୋଜନା କରି କାର୍ଯ୍ୟ କରାଯାଉଛି । ସୁତରାଂ ସମଗ୍ର ଦେଶରେ, ପ୍ରତି ଷ୍ଟେଟରେ ଏବଂ ପ୍ରତି ଗ୍ରାମରେ ଏହି ଉତ୍ପାଦନ ଶକ୍ତିକୁ ଜାଗ୍ରତ କରି କାର୍ଯ୍ୟରେ ଲଗାଇବାକୁ ହେବ । ସାଧାରଣ ଦେଖିବାକୁ ଗଲେ ଦୁଇ ପ୍ରକାର ଉତ୍ପାଦନ ମନୁଷ୍ୟ ଆବଶ୍ୟକ କରେ । ଭୂମିରୁ ଖାଦ୍ୟ ଉତ୍ପାଦନ, ଅନ୍ୟାନ୍ୟ ଆବଶ୍ୟକ ଜିନିଷ ପାଇଁ କାରିଗରୀ କାମ ଯଥା—ତନ୍ତୀ, ବଢ଼େଇ, ବଣିଆ, କମାର, ଚିତ୍ରକରମାନଙ୍କ କାର୍ଯ୍ୟ । ଏହି ଉଭୟଙ୍କ ସମନ୍ୱୟରେ ଗ୍ରାମର ଉତ୍ପାଦନ ଶକ୍ତି ବୃଦ୍ଧି ପାଇ ପାରିବ । ଏଥିପାଇଁ ଗ୍ରାମ ଗଢ଼ିବା ପାଇଁ ଗ୍ରାମବାସୀମାନଙ୍କର ଆଗ୍ରହ, ସରକାରୀ କର୍ମଚାରୀଙ୍କର ଶୃଙ୍ଖଳିତ କାର୍ଯ୍ୟକାରୀ ଶକ୍ତି ଏବଂ ଦେଶ ସେବକଙ୍କ ସାହସ ଓ ଦେଶପ୍ରୀତି ସବୁ ମିଳିତ ନ ହେଲେ ନ ଚଳେ । କେବଳ ସେତିକି ହେଲେ ମଧ୍ୟ ଚଳିବ ନାହିଁ ।

# ଦେଶର ଉତ୍ପାଦନ ଶକ୍ତି ବୃଦ୍ଧି କରିବା ପାଇଁ ସଂଗଠନ ଆବଶ୍ୟକ

କୌଣସି କାର୍ଯ୍ୟ କୌଣସି ବ୍ୟକ୍ତିର କାର୍ଯ୍ୟ ନ ହୋଇ ସବୁ ସଂଗଠିତ ଅନୁଷ୍ଠାନର କାର୍ଯ୍ୟ ହେବ । ଏଥିପାଇଁ ପାର୍ଲିଆମେଣ୍ଟ, ଷ୍ଟେଟରେ ବିଧାନସଭା, ଜିଲ୍ଲାରେ ଜିଲ୍ଲା ପରିଷଦ, ବ୍ଲକରେ ବ୍ଲକ୍ ଉନ୍ନୟନ କମିଟି, ଗ୍ରାମରେ ଗ୍ରାମ ପଞ୍ଚାୟତ ଓ ସମବାୟ ସମିତି ଗଠନ କରାଯାଇଅଛି । ଗ୍ରାମରେ ଶିଶୁବାହିନୀ, ଯୁବକ ସଂଘ ଓ ମହିଳା ମଣ୍ଡଳ ଗଠନ କରାଯାଉଛି । ଏହି ସମସ୍ତ ସଂଗଠନର ଲକ୍ଷ୍ୟ ଗୋଟିଏ ସମସ୍ତେ ଗୋଟିଏ ସୂତ୍ରରେ ବନ୍ଧା । ସରକାର ଓ ଜନସାଧାରଣ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ସରକାର ଓ ଜନସାଧାରଣ ଗୋଟିଏ ଶଗଡ଼ର ଦୁଇଟି ଚକପରି, ମନୁଷ୍ୟର ଦୁଇଟି ଆଖିପରି, ଉଡ଼ନ୍ତା ଚଢ଼େଇର ଦୁଇଟି ଡେଣା ପରି ସବୁ ଗୋଟିଏ, ସମସ୍ତଙ୍କର କାମ ଗୋଟିଏ, ସମସ୍ତଙ୍କର ଲକ୍ଷ୍ୟ ସମାନ—ଭାରତକୁ ସମୃଦ୍ଧଶାଳୀ କରି ଗଢ଼ିବା ଏକମାତ୍ର ଲକ୍ଷ୍ୟ । ମନୁଷ୍ୟ ନିଜ ଜୀବନର ବିକାଶ ସାଧନ କରି ସମାଜରେ ତାର କର୍ତ୍ତବ୍ୟ ପାଳନ କରିବା ପାଇଁ ବହୁ ସାମଗ୍ରୀ ଆବଶ୍ୟକ କରେ । ସେହି ସମସ୍ତ ସାମଗ୍ରୀ ଅଥବା ପଦାର୍ଥ ବ୍ୟକ୍ତିଗତ ଚେଷ୍ଟାରେ ପ୍ରାପ୍ତି କରିବା ବଡ଼ କଠିନ । ତେଣୁ ଅନୁଷ୍ଠାନର ଅବଲମ୍ବନ ଆବଶ୍ୟକ ପଡ଼େ । ତେଣୁ ଭାରତକୁ ନୂତନ କରି ଗଢ଼ିବା ପାଇଁ ତଳୁ ଉପର ପର୍ଯ୍ୟନ୍ତ ଅନୁଷ୍ଠାନ ଗଢ଼ା ଯାଉଛି । ଅଥବା କେତେ ନୂଆ କରି ଗଢ଼ିବାକୁ ପଡ଼ୁଛି । ଦେଶକୁ ଗଢ଼ିବାକୁ ଅନୁଷ୍ଠାନ ତଳୁ ଉପରେ ପର୍ଯ୍ୟନ୍ତ ସଗଠନ କରି ଉନ୍ନତିମୂଳକ କର୍ମ ପାଇଁ ଦେଶରେ ଜାତିରେଣ ଅଣିବାକୁ ପ୍ରବଳ ଉଦ୍ୟମ କରାଯାଉଅଛି ।

# ଉନ୍ନତମୂଳକ କର୍ମଯୋଜନା ଆଶାନୁରୂପ ଫଳ ନ ଦେବାର କାରଣ

ଏହା ବହୁଲୋକଙ୍କର ଆଖିକୁ ଦେଖା ଯାଉନାହିଁ । ଏହି ଉଦ୍ୟମରେ ଦେଖାଦେଉଥିବା ଦୋଷତ୍ରୁଟି କେବଳ ଅନେକଙ୍କ ଚକ୍ଷୁରେ ପଡ଼ୁଛି । ତାହାକୁ ବହୁ ଲୋକ ଦୋଷି ହୋଇ ଜୀବନରେ ବ୍ୟର୍ଥତା ଅନୁଭବ ଏବଂ କର୍ତ୍ତବ୍ୟ କର୍ମରେ ଶିଥିଳତା ପ୍ରକାଶ କରୁଛନ୍ତି । ଏହି ପ୍ରକାର ବ୍ୟର୍ଥ ମନୋରଥ ଭାବାପନ୍ନ ବ୍ୟକ୍ତି ଜନ-ସାଧାରଣଙ୍କ ମଧ୍ୟରେ ଯେତେ ଦେଖିବାକୁ ମିଳୁନାହାନ୍ତି, ତଦପେକ୍ଷା ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ ଅଧିକ ଦେଖିବାକୁ ମିଳୁଛନ୍ତି । 'କାମରେ ଆଉ ମନ ଲାଗୁନାହିଁ', ଏହା ସମସ୍ତଙ୍କ ମୁହଁରୁ ଶୁଣିବାକୁ ମିଳୁଛି । ଏହାର କାରଣ ଜାଣିବାକୁ ଆଗ୍ରହ ପ୍ରକାଶ କଲେ କିଏ କଣ କହୁଛି ତାହାର କିଛି ଠିକଣା ନାହିଁ । ସେ ସବୁର ଆଲୋଚନା ଦରକାର କରୁନାହିଁ ଏହିସବୁ ସୂଚେଇ ଦେବାର ଉଦ୍ଦେଶ୍ୟ ହେଉଛି ବ୍ଲକ ଏବଂ ଗ୍ରାମ ପଞ୍ଚାୟତର ଉନ୍ନୟନ କାର୍ଯ୍ୟ ଢିଲା ପଡ଼ିବାର କାରଣ ନିର୍ଦ୍ଧାରଣ କରିବା । କେବଳ ତାହା ନୁହେଁ, ଦେଶର ଏବଂ ସମାଜର ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ବିଶୃଙ୍ଖଳା ଚିନ୍ତା ଓ କାର୍ଯ୍ୟରେ ଦେଖା ଦେଇଛି ତାହାର କାରଣ ମଧ୍ୟ ଅନୁସନ୍ଧାନ କରିବା । ତାହା ନ କଲେ କେବଳ ଯୋଜନା ବାନ୍ଧି ସଂଗଠନ ଗଢ଼ିଦେଲେ କାମ ହୋଇଯିବ ନାହିଁ । କାର୍ଯ୍ୟ କିଏ କରିବ ? ସରକାରୀ କର୍ମଚାରୀ ଓ ଜନସାଧାରଣ ସମସ୍ତଙ୍କୁ ବ୍ୟର୍ଥମନୋରଥ ଭାବନା ବ୍ୟାଧି ଘୋଟିଛି । ଦେଶ ଏହିପରି ବ୍ୟାଧିଗ୍ରସ୍ତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ବ୍ୟାଧିର ଲକ୍ଷଣ ସ୍ୱାର୍ଥାନ୍ଧ । ନିଜ ସ୍ୱାର୍ଥ ସାଧନ ବ୍ୟସ୍ତତା ଦେଶର ଭଲମନ୍ଦ ଚିନ୍ତା ଅନ୍ତ

ଅଳ୍ପ ଲୋକଙ୍କ ମନରେ ଖେଳୁଛି । ସ୍ୱାର୍ଥ ସାଧନ କରିବାକୁ କୌଣସି କାର୍ଯ୍ୟ କରିବାରେ ମନୁଷ୍ୟ ଦ୍ୱିଧା ବୋଧ କରୁନାହିଁ । ନ୍ୟାୟ ଅନ୍ୟାୟ ପ୍ରତି ଦୃଷ୍ଟି ରହୁନାହିଁ । ନୈତିକ ବଳ କମ୍ବା ପାପ ପୁଣ୍ୟର ଚିନ୍ତା ଲୋପ ପାଇଲେ ଦେଶ ଓ ସମାଜର ଯେପରି ଦୁର୍ଗତି ଘଟେ ଆମ୍ଭ ଦେଶରେ ସେହିପରି ଦୁର୍ଗତି ଘଟିଛି । ଏହାର ମୂଳ କାରଣ ଆମ୍ଭେମାନେ ନିଜ ମାତୃଭୂମିକୁ ଭୁଲି ଯାଇଛେ । ଆମ୍ଭ ଜୀବନର ମୂଳ ପୀଠ ଆମ୍ଭ ସାମାଜିକ ଜୀବନ । ବାରମ୍ବାର ବିଦେଶୀ ଶକ୍ତିର ଉତ୍ପୀଡ଼ନ ହେତୁ ଆମ୍ଭର ଜାତିର ଜୀବନୀ ଶକ୍ତିର ହ୍ରାସ ଘଟିଛି । ଆମ୍ଭେମାନେ ଦେଶକୁ ନିଜର ବୋଲି ଭାବି ତାହାର ସେବା କରିବାର ସମସ୍ତ ପ୍ରକାର ସୁଯୋଗ ସୁବିଧା ହରାଇ ବସିଥିବାରୁ କେବଳ ନିଜକୁ ରକ୍ଷା କରିବାକୁ ଅନବରତ ଚିନ୍ତା କରିଛେ । ଆଜି ଦେଶ ସ୍ୱାଧୀନ ହେଲେ ମଧ୍ୟ ଦେଶକୁ ଆପଣାର କରିବାକୁ ଅସମର୍ଥ ବୋଧ କରୁଛେ ଏବଂ ସ୍ୱାର୍ଥରକ୍ଷା କରିବା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟରେ ଆନନ୍ଦ ଲାଭ କରିପାରୁନାହେଁ । ଏହି ଅବସ୍ଥା ସବୁଦିନ ରହିବ ନାହିଁ । ଦେଶରେ ଜନସାଧାରଣଙ୍କ ମଧ୍ୟରେ ଚେତନା ଜାଗ୍ରତ ହୋଇଛି । ମହାତ୍ମା ଗାନ୍ଧୀ ଆମର ଆଖି ଖୋଲି ଦେଇଯାଇଛନ୍ତି । କେବଳ ବହୁ ଶତାବ୍ଦୀର ଅଭ୍ୟାସ ଛାଡ଼ି ନ ପାରି-ବାରୁ ବର୍ତ୍ତମାନର ଦୋଷ ତ୍ରୁଟି ପରିଲକ୍ଷିତ ହେଉଛି । ଦେଶରେ ଯେଉଁ ବ୍ୟାଧି ଘୋଟିଛି ସେଥିରୁ କେହି ମୁକ୍ତ ନୁହନ୍ତି । ସୁତରାଂ ବ୍ୟକ୍ତି ଅବା ଦଳବିଶେଷଙ୍କ ଠାରେ ସବୁ ଦୋଷ ଆରୋପ କରି କେବଳ ସମାଲୋଚନା କଲେ ଆମ୍ଭେ କଦାପି ଆମ୍ଭର ଲକ୍ଷ୍ୟ ସ୍ଥଳରେ ଉପନୀତ ହୋଇ ପାରିବା ନାହିଁ । ଦେଶରେ ଦେଖା ଦେଇଥିବା ଦୋଷ ତ୍ରୁଟି ବିଷୟ ଭାବି ଅନ୍ଧ ପାଲଟିଲେ ଭଳି ନିଜର କର୍ତ୍ତବ୍ୟ କର୍ମରେ ଅବହେଳା କରିବା କମ୍ବା ଶିଥିଳତା ଦେଖାଇବା

ଉଚିତ ନୁହେଁ । ପ୍ରତ୍ୟେକ ବ୍ୟକ୍ତି ଚିନ୍ତା କରନ୍ତୁ ତାର ନିଜର କର୍ତ୍ତବ୍ୟ । ଦେଶକୁ ଗଢ଼ିବାକୁ ଯେଉଁ କର୍ମଯୋଜନା କାର୍ଯ୍ୟକାରୀ କରାଯାଉଛି ତାହା ବୁଝିବାକୁ ଆଗ୍ରହ ଦେଖାଇବା ଉଚିତ । କେହି କହନ୍ତୁ ବୁଝିବେ ନାହିଁ ? ବୁଝିବାକୁ ଇଚ୍ଛା କରିବେ ନାହିଁ । କାର୍ଯ୍ୟ ହେବ କିପରି ? ଦେଶରେ ଓ ଗ୍ରାମରେ ପରିବର୍ତ୍ତନ ଘଟିବ କିପରି ? ଆମ୍ଭର ଦୁଃଖ ଦୁର୍ଦ୍ଦଶା ଦୂର ହେବ କିପରି ?

## ଅଧିକ ଖାଦ୍ୟ ଉତ୍ପାଦନ ଯୋଜନା

ବର୍ତ୍ତମାନ ଦେଶରେ କେତେଗୁଡ଼ିଏ ଅତି ଜରୁରୀ ସମସ୍ୟା ଦେଖାଦେଇଛି । ତାହା ଶୀଘ୍ର ସମାଧାନ କରି ନ ପାରିଲେ ଦେଶର ଦୁଃଖ ଦୁର୍ଦ୍ଦଶାର ସୀମା ରହିବ ନାହିଁ । ଏହି ଜରୁରୀ ସମସ୍ୟା ସମାଧାନ କରିବାକୁ ଦେଶର ଜନସାଧାରଣ ସମସ୍ତେ କାର୍ଯ୍ୟ କରିବା ଦରକାର । କାର୍ଯ୍ୟ କେବଳ ଏହା ସମାଧାନ କରିବ । ସମାଲୋଚନା ଦ୍ୱାରା କୌଣସି ସମସ୍ୟା ସମାଧାନ ହୋଇପାରିବ ନାହିଁ । ଖାଦ୍ୟ ଓ ଜନସଂଖ୍ୟା ବୃଦ୍ଧି ଏ ଦୁଇଟି ବଡ଼ ସମସ୍ୟା । ଆମ ଦେଶରେ ଯେତେ କୃଷିଜମି ଅଛି ସେଥିରେ ଯାହା ଫସଲ ହେଉଛି ତାହା ଆମ୍ଭ ଦେଶର ଲୋକମାନଙ୍କ ପାଇଁ ନଅଣ୍ଟ ପଡ଼ୁଛି । ଏହି ନଅଣ୍ଟ ପଡ଼ୁଥିବା ଖାଦ୍ୟ ପଦାର୍ଥ ଆମ ଜମିରୁ ଉତ୍ପାଦନ କରିବାକୁ ହେବ । ଏଥିପାଇଁ ଅଧିକ ଖାଦ୍ୟ ଉତ୍ପାଦନ ପାଇଁ ବ୍ୟବସ୍ଥା କରାଯାଇଛି । ବ୍ୟବସ୍ଥାରେ ଯାହା ଅଛି ତାହାକୁ ଗ୍ରହଣ କରି କାର୍ଯ୍ୟରେ ପରିଣତ କରି ପାରିଲେ ଜମିରୁ ଯାହା ଯେତେ ଆମଦାନୀ ହେଉଛି ତହିଁରୁ ନିଶ୍ଚୟ ଅଧିକ ଉତ୍ପନ୍ନ କରିହେବ । ଅଧିକ ଖାଦ୍ୟଦ୍ରବ୍ୟ ଉତ୍ପନ୍ନ କରିବା ପାଇଁ ଗଢ଼ା ଯାଇଥିବା ଯୋଜନାକୁ କାର୍ଯ୍ୟକାରୀ କରିବା ବ୍ଲକ୍‌ର ବର୍ତ୍ତମାନ ପ୍ରଧାନ କାର୍ଯ୍ୟ ।

ସୃଷ୍ଟିର ଆରମ୍ଭରେ ମନୁଷ୍ୟ ମାଙ୍କଡ଼ ପରି ବୃକ୍ଷରେ ବାସ କରୁଥିଲା ବୋଲି ମାନବ ସଭ୍ୟତାର ଇତିବୃତ୍ତରେ ମତାମତ ପ୍ରକାଶ ପାଇଛି । ମନୁଷ୍ୟ ଆଦିମ ଅବସ୍ଥାରେ ଉଲଗ୍ନ ହୋଇ ଦଳ ବାନ୍ଧି ବନ ଜଙ୍ଗଲରେ ବୁଲୁଥିଲା । ଜଙ୍ଗଲର ପଶୁପକ୍ଷୀ ଶିକାର କରି ଆହାର କରୁଥିଲା । ଶିକାର କରିବା ସବୁବେଳେ ସହଜ ନ ହେବାରୁ ମନୁଷ୍ୟ କୁକୁଡ଼ା, ଛେଳି, ମେଣ୍ଢା ଆଦି ପଶୁ ପାଳି ଆହାର ସଞ୍ଚୟ କରିବାକୁ ଆରମ୍ଭ କଲା । କାଳକ୍ରମେ ଭୂମିରୁ ଫସଲ ଆଦାୟ କରି ବଞ୍ଚି ରହିବାର କୌଶଳ ଉଦ୍ଭାବନ କଲା । ମାନବ ସଭ୍ୟତାର କ୍ରମେ ବିକାଶ ପୁରାଣ ଅଧ୍ୟୟନ କଲେ ଜଣାପଡ଼େ ଯେ ପ୍ରାଣୀ ଜଗତ ଓ ଉଦ୍ଭିଦ ଜଗତ ଉପରେ ଅବଲମ୍ବନ କରି ମନୁଷ୍ୟ ସମାଜ କ୍ରମ-ବିକାଶ ଲାଭ କରିଛି । ସୁତରାଂ ଆଜି ଆମର ଦେଶକୁ ସମୃଦ୍ଧିଶାଳୀ କରିବାକୁ କର୍ମଯୋଜନା କଳ୍ପନା କଲାବେଳେ ପ୍ରଥମେ କୃଷି ଉପରେ ଅଧିକ ଧ୍ୟାନ ଦେବାକୁ ପଡ଼ୁଛି । କୃଷି କହିଲେ ଉଦ୍ଭିଦ ଜଗତ । ଜମିରେ ଖାଦ୍ୟଦ୍ରବ୍ୟ ଉତ୍ପନ୍ନ କରିବାଠାରୁ ବୃକ୍ଷ ଲତା, ବଣ ଜଙ୍ଗଲ ଇତ୍ୟାଦିର ସୃଷ୍ଟି ଓ ସଂରକ୍ଷଣ ଦରକାର ପଡ଼ୁଛି । ଏଣୁ ଫଳ ମୂଳ, ବିଭିନ୍ନ ପ୍ରକାର ଫସଲର ଚାଷ, ବୃକ୍ଷରୋପଣ ଆଦି ସମସ୍ତ କାର୍ଯ୍ୟ ପ୍ରସାର ଲାଭ କରିବା ପାଇଁ କଳ୍ପନା କରାଯାଉଅଛି । ମନୁଷ୍ୟକୁ ସୁଖ ସ୍ୱାଚ୍ଛନ୍ଦ୍ୟରେ ବଞ୍ଚି ରହିବା ପାଇଁ ଏହିସବୁର ଅଭିବୃଦ୍ଧି ନିହାତି ଆବଶ୍ୟକ । ମୃତ୍ତିକା ଓ ଜଳ ଅଧିକ ଖାଦ୍ୟ ଉତ୍ପାଦନର ଦୁଇଟି ମୌଳିକ ଉପାଦାନ । ମାନବ ସମାଜର କଲ୍ୟାଣ ପାଇଁ ପ୍ରକୃତିର ଏହି ଦୁଇଟି ଉପାଦାନ ବଡ଼ ମୂଲ୍ୟବାନ ଦାନ । ଏହାକୁ ସାଇତି ରଖି ବ୍ୟବହାର କରି ଜାଣିଲେ ମନୁଷ୍ୟର କୌଣସି ଦୁଃଖ ଓ ଅଭାବ ରହିବ ନାହିଁ । ମାଟି ଓ ପାଣି ପ୍ରକୃତି ସୃଷ୍ଟି କରିଛି—ମନୁଷ୍ୟ ସୃଷ୍ଟି କରିନାହିଁ । ଏହା କାହାରି ବ୍ୟକ୍ତିଗତ ସମ୍ପତ୍ତି ନୁହେଁ କିମ୍ବା

ବ୍ୟକ୍ତିଗତ ସମ୍ପତ୍ତି ହୋଇ ଜଣକର ଚିରଦିନ ରହି ନାହିଁ କିମ୍ବା କେବେହେଁ ମଧ୍ୟ ରହିବ ନାହିଁ । ଏହାର ସଦ୍‌ବ୍ୟବହାର ନ କଲେ ତାହା ଭଲ ଫଳ କାହାକୁ ଦିଏ ନାହିଁ । ଆମଦେଶର ଜନସାଧାରଣ ମାଟି ଓ ପାଣିର ସଦ୍‌ବ୍ୟବହାର ଏବଂ ରକ୍ଷା ରକ୍ଷଣ କରିବାର ଉପାୟ ଜାଣିପାରୁ ନ ଥିବାରୁ ଆମ୍ଭର ଖାଦ୍ୟ ପଦାର୍ଥର ନିଅଣ୍ଟ ପଡ଼ୁଛି । ମାଟିକୁ ବ୍ୟବହାର କରୁଛେ । ତାକୁ ସାଇତି ଜାଣୁନାହେଁ । ମାଟି ଦିନକୁ ଦିନ ଦୁର୍ବଳ ହୋଇ ଯାଉଛି, ତହିଁରେ ବଳ ଦେବାକୁ ଚିନ୍ତା କରୁନାହେଁ । ଭଲ ଖାଦ୍ୟ ନ ପାଇଲେ ମନୁଷ୍ୟ ଦୁର୍ବଳ ହୋଇ ବ୍ୟାଧିଗ୍ରସ୍ତ ହୋଇ ପଡ଼ୁଛି । ମାଟି ଓ ବୃକ୍ଷ ସେପରି ଭଲ ଖାଦ୍ୟ ନ ପାଇଲେ ଦୁର୍ବଳ ହୋଇ ପଡ଼ନ୍ତି । ସୁତରାଂ ଏହି ମାଟି ଓ ବୃକ୍ଷକୁ ବଳ ଦେବାପାଇଁ କର୍ମଯୋଜନା ପ୍ରସ୍ତୁତ ହୋଇଛି । ତାହା ନ ହେଲେ କୃଷି କରୁଥିବା ମାଟି ତଥା ଜମିରୁ ଅଧିକ ଫସଲ ଉତ୍ପନ୍ନ ହୋଇ ପାରିବ ନାହିଁ । ଉତ୍କୃଷ୍ଟ ଓ ଅଧିକ ଫସଲ ଉତ୍ପନ୍ନ କରିବା ଉଦ୍ଦେଶ୍ୟରେ ବିଭିନ୍ନ ପ୍ରକାର ସାର ପିଡ଼ିଆ ଜମିରେ ଦେବାକୁ ଗ୍ରାମବାସୀମାନଙ୍କୁ ପରାମର୍ଶ ଦିଆଯାଉଛି । ସବୁଜସାର ଜମିରେ ଜନ୍ମାଇ ପ୍ରଚୁର ପରିମାଣରେ ବ୍ୟବହାର କରିବା ପାଇଁ କୃଷୀମାନଙ୍କୁ ପ୍ରବର୍ତ୍ତାଇବାକୁ ପଡ଼ୁଛି । ଗୋରୁ ଗାଈଙ୍କ ମଳମୂତ୍ର ଏବଂ ଗୃହ ଓ ଗ୍ରାମର ଯାବତୀୟ ଆବର୍ଜନାକୁ ମଧ୍ୟ କିପରି ସଂରକ୍ଷଣ କଲେ ତାହା ଜମିରେ ଅଧିକ ବଳଦେବ, ତାହା ବତାଇବାକୁ କର୍ମଚାରୀ ନିଯୁକ୍ତ ହୋଇଛନ୍ତି । ଉତ୍କୃଷ୍ଟ ଧରଣର ବିହନ ଯୋଗାଇ ଦିଆଯାଉଛି । ଉନ୍ନତ ଧରଣର କୃଷି ପାଇଁ ବୈଜ୍ଞାନିକ ଗବେଷଣା କରାଯାଉଛି । ମାଟି ତଥା କୃଷି ଜମିର ଉନ୍ନତି ଅର୍ଥାତ୍ କ୍ଷୟପ୍ରାପ୍ତ ବଳକୁ ବୃଦ୍ଧି କରି ଅଧିକ ଫସଲ ଉତ୍ପନ୍ନ କରାଇବାକୁ ଯାହା କିଛି ଆବଶ୍ୟକ ସେହି ସବୁର ଜ୍ଞାନ ଏବଂ ଉପକରଣ ଗ୍ରାମବାସୀମାନେ କିପରି ସହଜରେ ପାଇ

ପାରିବେ, ସେହି ଦୃଷ୍ଟିରେ କୃଷି ଯୋଜନା କରାଯାଇଛି ସତ୍ୟ ; କିନ୍ତୁ ଯୋଜନା ବାନ୍ଧିଦେଲେ ଫଳ ଫଳିବ ନାହିଁ ।

ପାଣି ନ ପାଇଲେ ମାଟିର କୌଣସି କରାମତି ନାହିଁ । ପାଣି ମାଟିକୁ ବଳ ଦେଉଛି—ପୁଣି ସେହି ପାଣିର ତତ୍ତ୍ୱ ନ ନେଲେ ତାହା ମାଟିରୁ ବଳତକ ହରଣ କରି ନେଇ ପଳାଉଛି । ପାଣି ମାଟି ଉପରେ ବହୁଛି । ପାଣି ବହିଲେ ନିଶ୍ଚୟ ମାଟିର ବଳ ଭାଙ୍ଗିଦେବ, କିନ୍ତୁ ରହିଲେ ବଳ ଦେବ । ଏ କଥା ସହଜରେ ଜଣାପଡୁ ନାହିଁ । ପାଣିକୁ ବାନ୍ଧି ତାକୁ ଚଳେଇବାକୁ ପଡ଼ିବ । ପାଣି ଆମ୍ଭ ଇଚ୍ଛାନୁସାରେ ଚଳିବ, ତା ଇଚ୍ଛାରେ ରହିଲେ ଆମ କାମକୁ ପାଇବ ନାହିଁ । ଏଣୁ ଏହି ପାଣିକୁ ବାନ୍ଧି ଆମ୍ଭ ଚାଷ ଜମିକୁ ନେବା ପାଇଁ ବାନ୍ଧ ବାନ୍ଧିବା ଦରକାର । ଏହି ଉଦ୍ଦେଶ୍ୟରେ ନଦୀ ନାଳ ବନ୍ଧାଇ କେନାଲ ଖୋଳା-ଯାଇଛି ଏବଂ ଛୋଟ ଛୋଟ ନଇନାଳ ବନ୍ଧାଇବାକୁ ପଡ଼ୁଛି । ପାଣି ମାଟିରୁ ବଳକୁ ଯେପରି ନେଇ ନ ପାରିବ ସେଥିପାଇଁ ମୃତ୍ତିକା ସଂରକ୍ଷଣ ବିଭାଗ ଖୋଲି କାର୍ଯ୍ୟ କରିବା ପାଇଁ ଯୋଜନା କରାଯାଉଛି । ଗୋରୁ ମଇଁଷି ଆଦି ଗୃହପାଳିତ ପଶୁଙ୍କ ଚିକିତ୍ସା ଓ ଉତ୍କୃଷ୍ଟ ଜାତିସ୍ୱ ଗୃହପାଳିତ ପଶୁ କିପରି ଜନ୍ମିବେ, ସେଥିପାଇଁ ବ୍ଲକ୍‌ରେ ବ୍ୟବସ୍ଥା କରାଯାଇଛି । ପଶୁ ଚିକିତ୍ସକ ନିଯୁକ୍ତ ହୋଇଛନ୍ତି । ଖାଦ୍ୟ ସମସ୍ୟା ସମାଧାନ କରିବା ପାଇଁ ଏଥିରୁ କିଛି ଅଧିକ କଳ୍ପନା କରାଯାଇ ନ ପାରେ । ଯେଉଁମାନେ ଏହି କର୍ମଯୋଜନା କାର୍ଯ୍ୟ କରିବାକୁ ନିଯୁକ୍ତ ହୋଇଛନ୍ତି ସେହିମାନଙ୍କ କର୍ମ କୁଶଳତା ଏବଂ ଦେଶବାସୀଙ୍କର ସମସ୍ୟାର ଗୁରୁତ୍ୱ ଉପଲବ୍ଧି କରି ତାହାକୁ ସମାଧାନ କରିବାକୁ ଯେପରି ସାହାଯ୍ୟ ଓ ସହଯୋଗ କରିବେ ତାହାରି ଉପରେ ସବୁ ନିର୍ଭର କରୁଛି ।

ଅଧିକ ଜନବୃଦ୍ଧି ସମସ୍ୟା ଗୁରୁତର ବିଷୟ । ଏହାକୁ ଆମ୍ଭ ଦେଶର ସାଧାରଣ ଅଧିବାସୀ ସମ୍ୟକ୍ ରୂପେ ଉପଲବ୍ଧି କରିବାର ସମୟ ଆସିନାହିଁ ବୋଲି ମନେ ହୁଏ । ତଥାପି ଏହି ସମସ୍ୟା ସମାଧାନ କରିବାକୁ ଯଥାସମ୍ଭବ ଉପାୟ ଅବଲମ୍ବନ କରାଯାଉଛି । ଦେଶରେ ଏହାର ଗୁରୁତ୍ୱ ଉପଲବ୍ଧି କରି ପାରିଥିବା ବହୁ ନରନାରୀ ଏହାର ନିୟମ ପାଳନ କରୁଛନ୍ତି । ଏଥିପାଇଁ ଦେଶରେ ଆଗ୍ରହ ଓ ମନୋବୃତ୍ତି ସୃଷ୍ଟି କରିବାକୁ ପଡ଼ିବ । ବ୍ଲକ୍ କର୍ମଯୋଜନାରେ ଏହି ବିଷୟ ରଖାଯାଇଥିଲେ ମଧ୍ୟ ଏହା ଉପରେ ବିଶେଷ ଗୁରୁତ୍ୱ ଅର୍ପଣ କରାଯାଇନାହିଁ । କିନ୍ତୁ ଆମ୍ଭ ଦେଶରେ ଯାହା ପ୍ରାକୃତିକ ସମ୍ବଳ ଓ ସମ୍ପଦ ରହିଛି, ତାକୁ ବିଚାର କଲେ ଆମକୁ ଜନ୍ମ ନିୟନ୍ତ୍ରଣ ମାର୍ଗ ଅବଲମ୍ବନ କରିବାକୁ ପଡ଼ିବ । ତାହା ନ ହେଲେ ଦେଶକୁ ସମ୍ଭାଳିବା ଅସମ୍ଭବ ହୋଇ ପଡ଼ିବ ।

## କୁଟୀର ଓ କ୍ଷୁଦ୍ରଶିଳ୍ପ

ଆମ ଦେଶରେ କୌଣସି କାମ କରିବାକୁ ମନୁଷ୍ୟବଳ ଅଭାବ ନାହିଁ । କିନ୍ତୁ ଏହି ଜନବଳ କୌଣସି କାର୍ଯ୍ୟରେ ଲାଗୁନାହିଁ । ସମୟର ସଦ୍‌ବ୍ୟବହାର ଅଥବା ତାହାର ମୂଲ୍ୟ ଅମ୍ଭେମାନେ ବୁଝି ନ ପାରୁଥିବାରୁ ବହୁତ ସମୟ ବୃଥାରେ ବ୍ୟୟ ହୋଇ ଯାଉଛି । ଆମ ଦେଶରେ ପ୍ରଚୁର ଜନଶକ୍ତି ଏବଂ ଅପବ୍ୟୟ ହେଉଥିବା ବହୁତ ସମୟ ପଡ଼ି ରହିଛି । ଏହି ଦୁଇଟି ଶକ୍ତି ଉତ୍ପାଦନ ପାଇଁ ବିଶେଷ ଦରକାର । ଗ୍ରାମ-ଜୀବନରେ ଏହି ଦୁଇଟି ଶକ୍ତିକୁ କାମରେ ଲଗାଇ ପାରିଲେ ଦେଖା ଦେଇଥିବା ଜରୁରୀ ସମସ୍ୟାମାନ ସମାଧାନ କରିବା କଷ୍ଟକର ହେବନାହିଁ । ବ୍ଲକ୍‌ର କର୍ମଚାରୀମାନେ ଗ୍ରାମରେ କାର୍ଯ୍ୟ କଲାବେଳେ ଏଥିପ୍ରତି ଗ୍ରାମବାସୀମାନଙ୍କ ଦୃଷ୍ଟି,

ଆକର୍ଷଣ କରି ସେମାନଙ୍କୁ କାର୍ଯ୍ୟରେ ଲଗାଇବାକୁ ପଡ଼ିବ । ଗ୍ରାମର ଉନ୍ନତି ପାଇଁ ଗଢ଼ା ଯାଉଥିବା ପ୍ରତ୍ୟେକ ଅନୁଷ୍ଠାନ, ଯଥା—ଶିଶୁ ସ୍କୁଲ, ଯୁବକସଂଘ, ମହିଳା ମଣ୍ଡଳ ଏବଂ ପଞ୍ଚାୟତ ଓ ସମବାୟ ସମିତି ଇତ୍ୟାଦି ପ୍ରତ୍ୟେକ ସଂଗଠନ ଏହି ଦୁଇଟି ବଳର ଉପାଦେୟତା ଅନୁଭବ କରି କାର୍ଯ୍ୟରେ ପରିଣତ କରି ପାରିଲେ ଭଲ ବାଟ ବାହାର କରାଯାଇଅଛି । କୁଟୀରଶିଳ୍ପ ଓ କ୍ଷୁଦ୍ରଶିଳ୍ପ ହେଉଛି ବାଟ । କୁଟୀରଶିଳ୍ପ ପ୍ରତି ପରିବାରରେ ଏବଂ କ୍ଷୁଦ୍ରଶିଳ୍ପ ପ୍ରତି ପଞ୍ଚାୟତରେ ସଙ୍ଗଠନ କରିବାକୁ ହେବ । ଏହା କରି ପାରିଲେ ପରିବାରର ସମସ୍ତ ଆଜି ବୃଥାରେ ବ୍ୟସ୍ତ ହେବ ନାହିଁ ଏବଂ ପଞ୍ଚାୟତରେ ମନୁଷ୍ୟ ବଳକୁ କ୍ଷୁଦ୍ରଶିଳ୍ପାନୁଷ୍ଠାନରେ ଲଗାଇବାକୁ ପଡ଼ିବ । ଏହି ଉଭୟ କାର୍ଯ୍ୟ ଦ୍ୱାରା ଗ୍ରାମର ଆର୍ଥିକ ଉନ୍ନତି ଘଟିବ ଏବଂ ପ୍ରତ୍ୟେକ ଅନୁଷ୍ଠାନକୁ ମଧ୍ୟ ସଜୀବ କରିହେବ । ଏହା ଏକ ବିରାଟ କଳ୍ପନା ।

## ଗ୍ରାମ-ସହାୟକ ଟ୍ରେନିଙ୍ଗ୍ କ୍ୟାମ୍ପ

ଏହି କଳ୍ପନାକୁ ରୂପରେଖ ଦେବାକୁ ପ୍ରତି ଗ୍ରାମରେ ଜଣେ ଦୁଇଜଣ ପରିଚାଳକ ଅର୍ଥାତ୍ ଗ୍ରାମ ସହାୟକ ନିହାତି ଦରକାର । ଏଥିପାଇଁ ପ୍ରତି ଗ୍ରାମରୁ ଲୋକ ବାଛି ଗ୍ରାମ ସହାୟକ ତାଲିମ କରିବାର ବ୍ୟବସ୍ଥା ଯୋଜନାରେ ରଖାଯାଇଛି । ପ୍ରତି ବ୍ଲକ୍‌ରେ ଗ୍ରାମ ସହାୟକ ତାଲିମ ଶିବିର ଖୋଲି ତାଲିମ ଦିଆଯାଉଅଛି । ଏହି ତାଲିମ ପ୍ରାପ୍ତ ଗ୍ରାମ ସହାୟକମାନେ ଗ୍ରାମରେ କପରି କଣ କରିବେ ତାହା ମଧ୍ୟ ନିର୍ଦ୍ଦିଷ୍ଟ କରି ଦିଆଯାଇଛି । ଯୋଜନାରେ ସବୁ ଅଛି । କିନ୍ତୁ କାର୍ଯ୍ୟରେ ଯାହା ଦେଖିବାକୁ ମିଳୁଛି ତାହାସବୁ ଦେଖି ବ୍ଲକ୍‌ର କର୍ମ ଯୋଜନାକୁ ଦେଶର 'ଲୁଣ୍ଠନ କର୍ମଯୋଜନା' ବୋଲି କେହି କେହି ମତ ବ୍ୟକ୍ତ କରୁଛନ୍ତି । ଏପରି ମତାମତ ଶୁଣିବାକୁ ପାଇଲେ

ହୃଦୟରେ ଗଣ୍ଠିର ଦୁଃଖ ଅନୁଭବ କରିବାକୁ ହୁଏ । କାରଣ ଏପରି ମତାମତ ତାହାଙ୍କୁ ଉତ୍ସାହ ପ୍ରଦାନ କରେ ନାହିଁ । ବରଂ ତାହା କେବଳ କର୍ମକର୍ତ୍ତା ନୁହନ୍ତି, ଗ୍ରାମବାସୀଙ୍କ ମନରେ ମଧ୍ୟ କାର୍ଯ୍ୟ ପ୍ରତି ଶିଥିଳତା ଭାବ ସୃଷ୍ଟି କରିବାରେ ସାହାଯ୍ୟ କରେ । କିନ୍ତୁ ଦେଶର ସ୍ୱାର୍ଥରେ ସମସ୍ତଙ୍କ ସ୍ୱାର୍ଥ ନିହିତ ଅଛି ଏହା ଭୁଲିଯିବା ଉଚିତ ନୁହେଁ । ଯେଉଁ ଲକ୍ଷ୍ୟରେ ଯେଉଁ କର୍ମପାଇଁ ଯାହା ବ୍ୟବସ୍ଥା ଅଛି ସେହି ଲକ୍ଷ୍ୟକୁ ସ୍ମରଣ ରଖି କାର୍ଯ୍ୟ କରିଯିବା ଉଚିତ୍ । କାହାରି ମତାମତ ଦ୍ୱାରା ମନକୁ ବିଚଳିତ କରିବାର ନୁହେଁ । ଏହା ବ୍ଲକ୍‌ରେ କାର୍ଯ୍ୟ କରୁଥିବା କର୍ମକର୍ତ୍ତାମାନଙ୍କୁ କୁହାଯାଇ ପାରିବ । ସେମାନେ ଲକ୍ଷ୍ୟ ପ୍ରତି ମନ ଦେଉ ନାହାନ୍ତି—ମନ ଦେଉଥିଲେ ସ୍ମରଣ ରହୁନାହିଁ କିମ୍ବା ଯୋଜନାରେ ପରିକଳ୍ପିତ ଉଦ୍ଦେଶ୍ୟକୁ ଧରିପାରୁ ନ ଥିବାର ବୁଝା ପଡ଼ୁଛି । ତାହା ନ ହୋଇଥିଲେ ଗ୍ରାମ ସହାୟକ ତାଲିମ ଶିବିର ଗ୍ରାମରେ ନିଶ୍ଚୟ ପରିବର୍ତ୍ତନ ଆଣି ପାରନ୍ତା । ଗ୍ରାମରେ ମହିଳା ଓ ଯୁବକମାନଙ୍କୁ ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କର୍ମଯୋଜନାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ବାଟ ଦେଖାଇବା ପାଇଁ ଗ୍ରାମ ସହାୟକଙ୍କୁ ତାଲିମ ଦେବାପାଇଁ ଯେଉଁଭଳି କ୍ରିୟାନୁଷ୍ଠାନ କରାଯାଉଛି ତାହା ଦେଖିଲେ ବିଶ୍ୱାସ କରି ହେଉନାହିଁ ଯୋଜନାର ଲକ୍ଷ୍ୟ ଉପଲବ୍ଧି କରି କାର୍ଯ୍ୟକଲା ଭଳି । ଏଥିପାଇଁ ତାଲିମ ଶିବିରରେ ବହୁତ ଟଙ୍କା ହେଉଛି, କିନ୍ତୁ ଖର୍ଚ୍ଚକୁ ଦେଖିଲେ କାମ କିଛି ହେଉନାହିଁ ବୋଲି ଫଳାଫଳରୁ ବୁଝା ପଡ଼ୁଛି ।

ତାଲିମ ଶିବିର କୌଣସି ଗୋଟିଏ ଗ୍ରାମରେ ଖୋଲିବାର ନିୟମ । ଯେଉଁ ଗ୍ରାମରେ ତାଲିମ ଶିବିର ହେବ, ଉକ୍ତ ଗ୍ରାମବାସୀମାନେ ତାହାର ଉପକାରିତା ବୁଝି, ଶିବିରର ସୁବିଧା ଅସୁବିଧା ଦେଖି

ସାହାଯ୍ୟ କରିବାକୁ ପ୍ରସ୍ତୁତ ହେବେ, ଏବଂ ସେଥିପାଇଁ ଗ୍ରାମର ଆଗ୍ରହ ମଧ୍ୟ ପ୍ରକାଶ ପାଇବା ଉଚିତ । ପଞ୍ଚାୟତ ପୁରମାହାରେ ସାହାଯ୍ୟ ସହଯୋଗ କରିବ ଏବଂ ପଞ୍ଚାୟତର ସମସ୍ତ ସଭ୍ୟ ଶିବିରର ଦୈନିକ କାର୍ଯ୍ୟକ୍ରମରେ ଯୋଗଦେବେ । ଗ୍ରାମର ସ୍ତ୍ରୀ ପୁରୁଷ ବାଳକ ବାଳିକା ଶିବିରର କାର୍ଯ୍ୟକ୍ରମରୁ କେହି ଛୁଟି ପାଇବେ ନାହିଁ । ଗୋଟିଏ ଶିବିରରେ ପନ୍ଦର ଜଣ ଗ୍ରାମ-ସହାୟକଙ୍କୁ ତାଲିମ ଦେବାକୁ ହେବ । ବ୍ଲକ୍ ଅଫିସର, ଗ୍ରାମସେବକ ଓ ସାମାଜିକ ଶିକ୍ଷାଦାତା ଏହି ତିନିଜଣ ଗ୍ରାମ ପଞ୍ଚାୟତର ପରାମର୍ଶ ଓ ସାହାଯ୍ୟରେ ଗ୍ରାମ-ସହାୟକ ବାଛିବେ । ଗ୍ରାମ-ସହାୟକ ବାଛିବାରେ ତ୍ରୁଟି ରହିଲେ ସବୁ ବୃଥା ହେବ । ଏଥିପାଇଁ କୃଷିକାର୍ଯ୍ୟକୁ ମୂଳ ଭିତ୍ତି କରି ଗ୍ରାମ-ସହାୟକ ବାଛିବା ଦରକାର । ଭଲ କୃଷୀ ବୋଲି ଗ୍ରାମଲୋକେ ଯାହାକୁ ଜାଣିଥିବେ ଏବଂ କୃଷି ବିଷୟରେ ଯାହାଙ୍କ କଥାକୁ ଗ୍ରହଣ କରୁଥିବେ, ନିଜେ ଯାହା କୃଷିର ଉନ୍ନତିପାଇଁ କରିବ, ତାହା ଅନ୍ୟକୁ ପ୍ରବର୍ତ୍ତାଇ ପାରୁଥିବ, ଗ୍ରାମର କୌଣସି କାର୍ଯ୍ୟରେ ଯେ ଗ୍ରାମବାସୀମାନଙ୍କୁ ବୁଝାଇ ଏକଜୁଟ କରାଇ ପାରୁଥିବ ସେପରି ବ୍ୟକ୍ତିକୁ ଗ୍ରାମ-ସହାୟକ ପାଇଁ ବାଛିବାକୁ ହେବ । ତାହା ନ କରି ଧର୍ମକୁ ଆଖିଠାରି ମାଇଲି ଭଳି ବାଛକାଛ କରି ଯେ କୌଣସି ସ୍ଥାନରେ ଶିବିର ଖୋଲିଦେଲେ କାର୍ଯ୍ୟ ହେବ ନାହିଁ । ଗ୍ରାମରେ ଏପରି ଲୋକ ଅଛନ୍ତି, ଯାହାଙ୍କୁ ଦେଖିଲେ ଅବା ଯାହାଙ୍କ ସହିତ କଥା ହେଲେ କିଛି ବୁଝିହେବ ନାହିଁ । କିନ୍ତୁ ସାଧାରଣ ଗ୍ରାମବାସୀ ଯାହାର କଥା କେଉଁ ବିଷୟରେ ଶୁଣନ୍ତି, ତାହା ବୁଝିବା କଠିନ ହେବ ନାହିଁ । ଏଥିପାଇଁ ପଞ୍ଚାୟତ ଓ ଗ୍ରାମସେବକଙ୍କ ସାହାଯ୍ୟରେ ଗ୍ରାମବାସୀଙ୍କ ସହିତ କଥୋପକଥନ କରି ଗ୍ରାମସହାୟକଙ୍କ କର୍ତ୍ତବ୍ୟ ବୁଝାଇ ଦେଇ ଲୋକ ବାଛିବା ଦରକାର । ବ୍ଲକ୍‌ର କର୍ମଚାରୀମାନେ

ମନେରଖିବା ଉଚିତ ସେମାନେ ପ୍ରକୃତ ଗ୍ରାମ ସହାୟକ ଯେତେ ଅଧିକ ସଂଖ୍ୟାରେ ତାଲିମ କରିଦେଇ ପାରିବେ କାର୍ଯ୍ୟରେ ସେମାନେ ସେତିକ ସୁନାମ ଅର୍ଜନ କରିବେ ଏବଂ ଗ୍ରାମର ସମୃଦ୍ଧ ଉନ୍ନତି-ମୂଳକ କର୍ମ ମଧ୍ୟ ସେତିକ ଉନ୍ନତ ହେବ । ବ୍ଲକ୍ କାର୍ଯ୍ୟରେ କୃତ-କାର୍ଯ୍ୟ ହେବାକୁ ପ୍ରକୃତ ଗ୍ରାମ ସହାୟକ ତାଲିମ କରିବା ହେଲା ଗୁପ୍ତ ଅସ୍ତ୍ର—(Secret weapon) । କାରଣ ପ୍ରତି ଗ୍ରାମରେ ଯଦି ତାଲିମ ପ୍ରାପ୍ତ ଦୁଇ ତିନିଜଣ ଗ୍ରାମ-ସହାୟକ ରହିଯିବେ ସେମାନଙ୍କ ସାହାଯ୍ୟରେ ଗ୍ରାମରେ କାମ କରିବା କଠିନ ହେବ ନାହିଁ । ସୁତରାଂ ତାଲିମ ଦେବାର ପ୍ରଣାଳୀ ଏବଂ ଶିକ୍ଷା ଦେବା ବିଷୟ ଉପରେ ସବୁ ନିର୍ଭର କରେ । ସମସ୍ତଙ୍କ ମନକୁ ଆକୃଷ୍ଟ କରି ମନ ଓ ହୃଦୟରେ ଦେଶ ପ୍ରତି ପ୍ରଗାଢ଼ ଅନୁରକ୍ତିର ଭାବନା ଜନ୍ମିବା ଭଳି ଶିବିର ତଥା ଟ୍ରେନିଙ୍ଗ୍ କ୍ୟାମ୍ପକୁ ପରିଚାଳନା କରିବା ଦରକାର । ଶିବିର ସ୍ଥାପନ ପାଇଁ ଉପଯୁକ୍ତ ସମୟ ବାଛିବାକୁ ହେବ । ଆମ ଦେଶରେ ବୁଣା ଖାଗ ପରେ ରଜ ଉତ୍ସବ ପାଳନ କରନ୍ତି, ସୁତରାଂ ବୁଣା କାମ ସରିଲା ପରେ କମ୍ପା ଫସଲ ସବୁ ଉଠିଗଲା ପରେ ଗ୍ରାମରେ କିଛି କାମ ନ ଥାଏ । ଏହିପରି ସମୟ ବାଛି ଗ୍ରାମସହାୟକ ଟ୍ରେନିଙ୍ଗ୍କ୍ୟାମ୍ପ ଖୋଲିବାକୁ ହେବ । ସକାଳ ପାଞ୍ଚଟା ତିରିଶ ମିନିଟରୁ ରାତି ଦଶଟା ତିରିଶ ମିନିଟ ପର୍ଯ୍ୟନ୍ତ ଦୈନିକ କାର୍ଯ୍ୟ ନିର୍ଦ୍ଧାରିତ ନିୟମାନୁସାରେ କରିବାକୁ ପଡ଼ିବ ।

(୧) ସକାଳ ଘ୫-୩୦ରେ ଶଯ୍ୟା ତ୍ୟାଗ । (୨) ଘ୬ଣ୍ଟାରୁ ଘ୬-୩୦ ପ୍ରଭାତ ଫେରି ଓ ଶିବିର ସଫାଇ (୩) ଘ୬-୩୦ରୁ ଘ୭-୩୦ ପର୍ଯ୍ୟନ୍ତ ପ୍ରାର୍ଥନା ଓ ପତାକା ଉତ୍ତୋଳନ । (୪) ଘ୭-୩୦ରୁ ଘ୮ଣ୍ଟା ପର୍ଯ୍ୟନ୍ତ ଗୁ ଓ ଜଳପାନ । (୫) ଘ୮ଣ୍ଟାରୁ ଘ୧୦ଣ୍ଟା ପର୍ଯ୍ୟନ୍ତ ଶ୍ରମଦାନ । (୬) ଘ୧୦ଣ୍ଟାରୁ ଘ୧୧ଣ୍ଟା ପର୍ଯ୍ୟନ୍ତ ବାଡ଼ି ବଗିଚାରେ

କାର୍ଯ୍ୟ(୭) ଘ୧୧ଣ୍ଟାରୁ ଘ୧୧।୩୦ ପର୍ଯ୍ୟନ୍ତ ସ୍ନାନାଦି (୮) ଘ୧୧।୩୦ରୁ ୧ଘଣ୍ଟା ପର୍ଯ୍ୟନ୍ତ ସୂତା କଟା (୯) ଘ୧ଣ୍ଟାରେ ମଧ୍ୟାହ୍ନ ଭୋଜନ । (୧୦) ଘ୧-୪୫ରୁ ଘ୨ଣ୍ଟା ପର୍ଯ୍ୟନ୍ତ ବିଶ୍ରାମ । (୧୧) ଘ୨ଣ୍ଟାରୁ ଘ୪ଣ୍ଟାପର୍ଯ୍ୟନ୍ତ ଶିକ୍ଷା । (୧୨) ଘ୪ଣ୍ଟାରେ ଗୁ ଓ ସ୍ୱଳ୍ପ ଜଳପାନ । (୧୩) ଘ୪-୩୦ରୁ ଘ୫-୩୦ ଗ୍ରାମରେ ଅଭାବ ଅସୁବିଧା ସବୁର ଆଲୋଚନା କିମ୍ବା ଖେଳକସରତ (୧୪) ଘ ୫-୩୦ରୁ ୬ଟା ପର୍ଯ୍ୟନ୍ତ ନିତ୍ୟକୃତ୍ୟ, ଶିବିର ସଫାଇ (୧୫) ଘ୬ଣ୍ଟାରୁ ଘ୬-୩୦ ପର୍ଯ୍ୟନ୍ତ ପାଠ୍ୟ ବିଷୟରେ ପରସ୍ପର ମଧ୍ୟରେ ବିଚାର ଓ ଆଲୋଚନା (୧୬) ଘ୬-୩୦ରୁ ୭ଟା ପର୍ଯ୍ୟନ୍ତ ଶିବିର ପରିଚାଳନା କର୍ମକର୍ତ୍ତା ନିର୍ବାଚନ । ଶିବିର ପରିଚାଳନା ପାଇଁ ପ୍ରତ୍ୟହ ନୂତନ ପରିଚାଳକ ବଛାଯିବେ । ତଦ୍ୱାରା ଭୋଟଦାନର ନିୟମ ସରକାର ଗଠନ, ନେତା ନିର୍ବାଚନ, ମନ୍ତ୍ରୀ ସଭା ଗଠନ ଆଦି କାର୍ଯ୍ୟ କିପରି ହୋଇଥାଏ ସେସବୁ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନଲାଭ କରିବାକୁ ସାହାଯ୍ୟ କରିବ । ଶିବିରର ସମସ୍ତ କାର୍ଯ୍ୟ ଶିକ୍ଷାର୍ଥୀଙ୍କ ଦ୍ୱାରା ନିୟନ୍ତ୍ରିତ ହେବ । ଶିକ୍ଷାଦାତାମାନେ ଶିକ୍ଷାର୍ଥୀମାନଙ୍କ ସହିତ ଯୋଗଦେଇ ଶିବିରର ନିୟମାନୁସାରେ ଚାଲିବେ । ସେମାନେ ପରାମର୍ଶ ଦେବେ, କିନ୍ତୁ ଚାଳକର ଦାୟିତ୍ୱ ଗ୍ରହଣ କରିବେ ନାହିଁ । ଶିକ୍ଷାର୍ଥୀମାନେ ସେମାନଙ୍କ ମଧ୍ୟରୁ ପ୍ରତିଦିନ ଜଣେ ଚାଳକ ବାଛିବେ । ସେହି ଚାଳକ ଶିବିରର ବିଭିନ୍ନ କାର୍ଯ୍ୟ ଚଳାଇବା ପାଇଁ କର୍ମକର୍ତ୍ତା ମନୋନୀତ କରିବେ । ଏହି ନିର୍ବାଚିତ ଚାଳକ ଶିବିରର ମୁଖ୍ୟ ମନ୍ତ୍ରୀ, ତାଙ୍କର ମନୋନୀତ କର୍ମକର୍ତ୍ତା ବିଭାଗୀୟ ମନ୍ତ୍ରୀ ସ୍ୱରୂପ କାର୍ଯ୍ୟ କରିବେ । ପ୍ରତିଦିନ ମନ୍ତ୍ରୀ ମଣ୍ଡଳ ଭାଙ୍ଗୁଥିବ, ନୂତନ ମନ୍ତ୍ରୀମଣ୍ଡଳ ଗଠନ କରାଯାଉଥିବ । ସେଥିରେ ସ୍ୱାସ୍ଥ୍ୟ, ଶିକ୍ଷା, ଗୃହ ଓ ବୈଦେଶିକ ଏବଂ ପୂର୍ତ୍ତ ବିଭାଗ ନାମରେ ବିଭିନ୍ନ କାର୍ଯ୍ୟର ନାମକରଣ କରି ସେହି

କାର୍ଯ୍ୟର ଭାର ଯାହାଙ୍କ ଉପରେ ରହିବ ସେ ସେହି ବିଭାଗର ମନ୍ତ୍ରୀ ବୋଲାଇବେ । ରାତ୍ର ଭୋଜନ ପରେ ଘଣ୍ଟାକ ପାଇଁ ପ୍ରତ୍ୟହ ଶିବିରର ପାର୍ଲିଆମେଣ୍ଟ ବସିବ । ସେଠାରେ ବିଭାଗୀୟ ମନ୍ତ୍ରୀମାନେ ସେମାନଙ୍କ ବିଭାଗର ଉନ୍ନତି ପାଇଁ କର୍ମଯୋଜନା ପ୍ରସ୍ତାବ କରି ଆଲୋଚନା ଆରମ୍ଭ କରିବେ । ତାହାଙ୍କ କର୍ମଯୋଜନା ଆଲୋଚିତ ହୋଇ ଯେପରି ଗ୍ରହଣ କରାଯିବ ତଦ୍ଦ୍ୱାରା ସେମାନେ ନିଜ ନିଜ ଗ୍ରାମକୁ ଗଠନ କରିବା ପାଇଁ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିପାରିବେ । ଶିବିରରେ ଏହି ଶିକ୍ଷା ପାଇବା ବଡ଼ ଚିତ୍ତାକର୍ଷକ ହେବ । ମଳ ମୂତ୍ରପାଇଁ ଆଦର୍ଶ ବ୍ୟବସ୍ଥା ଶିଖିପାରିବେ । ଦେଶର ସରକାରୀ କାର୍ଯ୍ୟ କିପରି ପରିଚାଳିତ ହେଉଛି ତାହା ମଧ୍ୟ ଜାଣିପାରିବେ । ଦେଶ ବିଦେଶର ସର୍ବଶେଷ ସଂବାଦ ଜାଣିବାକୁ ମନରେ ଆଗ୍ରହ ଜାତ ହୋଇ ପାରିବ । ସୁତରାଂ ସବୁ କାର୍ଯ୍ୟର ଦାୟିତ୍ୱ ଶିକ୍ଷାର୍ଥୀମାନେ ବହନ କରିବେ । ଶିକ୍ଷାଦାତାମାନେ ଶିକ୍ଷାର୍ଥୀମାନଙ୍କ ଅଧୀନରେ ନିୟମ ମାନି ଚଳିବା ଦ୍ୱାରା ଗ୍ରାମବାସୀଙ୍କ ମନରେ ଶୃଙ୍ଖଳା ଜ୍ଞାନ ଜାତ ହେବା ସଙ୍ଗେ ସଙ୍ଗେ ଆତ୍ମବିଶ୍ୱାସ ଜାଗ୍ରତ ହେବ ।

(୧୭) ୭ଟାରେ ରାତ୍ର ଭୋଜନ (୧୮) ୭-୪୦ରୁ ୯ଟା ପର୍ଯ୍ୟନ୍ତ ନକଲି ପାର୍ଲିଆମେଣ୍ଟ ବୈଠକ (୧୯) ୯ ଘଣ୍ଟାରୁ ୧୦ ଟା ପର୍ଯ୍ୟନ୍ତ ଆମୋଦ ପ୍ରମୋଦ, ଯଥା—ନୃତ୍ୟ, ଗୀତ, ବାଜଣା ଫେରେର ।(୨୦) ୧୦ଟାରୁ ୧୦ଟା ୩୦ ପ୍ରାର୍ଥନା, ପ୍ରାର୍ଥନା ପରେ ଘ୧୦।୩୦ ଶୟନ ।

ଶିକ୍ଷଣୀୟ ବିଷୟ—୧ । ସ୍ୱାଧୀନତା ସଂଗ୍ରାମର ଇତିହାସ । ବିଭିନ୍ନ ସମୟରେ ବିଭିନ୍ନ ଘଟଣାର ଚିତ୍ର ଓ ରଚିତ କବିତା ପାଠ, 'ବନ୍ଦୀର ଆତ୍ମକଥା' ଇତ୍ୟାଦି । ୨ । ସ୍ୱାଧୀନତା ଲାଭର ପରିଣାମ, ସେତେବେଳର ବିପଦ, ମହାତ୍ମା ଗାନ୍ଧିଙ୍କର ବଳିଦାନ—ଚିତ୍ରର ପ୍ରଭାବ । ୩ । ଦେଶର ଶାସନ କ୍ଷମତା କିପରି ଗଠିତ ହୋଇ

ପଞ୍ଚବାର୍ଷିକ ଯୋଜନା କରାଗଲା । ୪ । ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା । ୫ । ଗ୍ରାମଗୋଷ୍ଠୀ ଯୋଜନାର ଲକ୍ଷ୍ୟ ଓ ତାହାର କର୍ମଯୋଜନା । ୬ । ଦେଶର ଜରୁରୀ ସମସ୍ୟାସବୁର ଆଲୋଚନା । ୭ । ପଞ୍ଚାୟତ ଗଠନ ଦ୍ୱାରା ଗ୍ରାମ-ରାଜ୍ୟ ଗଠନ ପରିକଳ୍ପନା, ପଞ୍ଚାୟତର କାର୍ଯ୍ୟ ଓ ଦାୟିତ୍ୱ, ଦେଶବାସୀଙ୍କର ନାଗରିକ ଅଧିକାର ଓ କର୍ତ୍ତବ୍ୟ । ୮ । ସମବାୟ ସମିତି—ଶିବିରରେ ପାନ, ମସଲା ଆଦି ଯୋଗାଇବାକୁ ଶିକ୍ଷାର୍ଥୀଙ୍କ ମଧ୍ୟରେ ସମବାୟ ସମିତି ଗଠନ କରି ତହିଁର ବ୍ୟବସ୍ଥା ; ଶ୍ରମଦାନ ଦ୍ୱାରା ଗଠନ କାର୍ଯ୍ୟ କରାଇ ସମବାୟ ସୂତ୍ରର ଆବଶ୍ୟକତା ଓ ଉପକାରିତା ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଦେବା । ୯। ଗ୍ରାମରେ ଶିଶୁରାଇଜ, ଯୁବକ ସଂଘ ଓ ମହିଳା ମଣ୍ଡଳ ଗଠନର ଉପାଦେୟତା ଓ ପ୍ରଣାଳୀ । ୧୦ । ଦେଶର ନେତୃବୃନ୍ଦଙ୍କ ଜୀବନୀ, ଜାତୀୟ ପତାକା ଓ ସଂଗୀତର ମର୍ଯ୍ୟାଦା ପାଳନ । ୧୧ । କୃଷି ବିଷୟରେ ପାଣି ମାଟିର ଉପାଦାନ ଓ ବଳ ; ବିଭିନ୍ନ ଫସଲ ଉତ୍ପାଦନ, ସାର ପିଡ଼ିଆ ସବୁଜସାର ଓ ଆଦର୍ଶ ଖତ ଗାଡ଼ିଆ ଇତ୍ୟାଦିର ଶିକ୍ଷା ବାସ୍ତବ କାର୍ଯ୍ୟରେ ; ମୃତ୍ତିକା ସଂରକ୍ଷଣ, ଜାପାନୀ ପ୍ରଣାଳୀରେ ଚାଷ କାର୍ଯ୍ୟକୁ ଏବଂ କରେ କରାଯିବ । ୧୨ । ଅଧିକ ଫସଲ ଉତ୍ପାଦନ ପାଇଁ ଉନ୍ନତ ଧରଣର ଚାଷ ଉପକରଣର ଉପକାରିତା ଓ ସମବାୟ ଚାଷର ଆବଶ୍ୟକତା ।୧୩ । ବୃକ୍ଷ ରୋପଣ, ସ୍ୱଳ୍ପ ସଞ୍ଚୟର ଉଦ୍ଦେଶ୍ୟ ଓ ଉପକାରିତା, ଜନ୍ମ ନିରୋଧ କଣ ଏବଂ କାର୍ଯ୍ୟକ ଇତ୍ୟାଦି ବିଷୟରେ ସମ୍ୟକ ଜ୍ଞାନ ଦେବା ।

ଗ୍ରାମ-ସହାୟକ ଟ୍ରେନିଙ୍ଗ୍ କ୍ୟାମ୍ପ ବ୍ଲକରେ କରାଯାଉଛି । ସମଗ୍ର ଦେଶରେ ଟ୍ରେନିଙ୍ଗ୍ ପ୍ରାପ୍ତ ଗ୍ରାମ-ସହାୟକ ସଂଖ୍ୟା ଓ ତହିଁରେ ଖର୍ଚ୍ଚ ହେଉଥିବା ଅର୍ଥର ପରିମାଣ ପ୍ରକାଶ ପାଉଛି । ଏହା ଲୋକଦେଖାଣିଆ ଅଥବା ଲୋକଭୁଲାଣିଆ କାମପରି ହେଉଛି

ବୋଲି କହିଲେ ଅଯଥା କଥା କୁହାହେଲା ବୋଲି କୁହାଯାଇପାରିବ ନାହିଁ । କିନ୍ତୁ ଉପରୋକ୍ତ ନିୟମ, ପ୍ରଣାଳୀ ଓ ଶିକ୍ଷଣୀୟ ବିଷୟ ଗ୍ରହଣ କରି ଗ୍ରାମ-ସହାୟକ ତାଲିମ ଦେଲେ ନିଶ୍ଚୟ ଆମର ଲକ୍ଷ୍ୟ ସାଧିତ ହୋଇ ପାରିବ ବୋଲି ମୋର ଦୃଢ଼ ବିଶ୍ୱାସ । କିନ୍ତୁ ଏହି କାର୍ଯ୍ୟ ବ୍ଲକ୍‌ର କର୍ମକର୍ତ୍ତାମାନେ ଏକାକୀ କରିପାରିବେ ନାହିଁ । ବିଭାଗୀୟ ଦାୟିତ୍ୱପୂର୍ଣ୍ଣ କର୍ମଚାରୀମାନଙ୍କର ସହଯୋଗ ଓ ସାହାଯ୍ୟ ନିତାନ୍ତ ଆବଶ୍ୟକ, ପ୍ରଚାର ବିଭାଗ, ଲୋକସମ୍ପର୍କ ବିଭାଗ, କୃଷି ଓ ସମବାୟ ବିଭାଗସବୁର କର୍ମଚାରୀ ଅଛନ୍ତି । କେନ୍ଦ୍ର ସରକାରଙ୍କର ପାଞ୍ଚବର୍ଷିଆ କର୍ମଯୋଜନାକୁ ଗ୍ରାମଗହଳରେ ପ୍ରଚାର କରିବାକୁ କର୍ମଚାରୀ ଅଛନ୍ତି । 'ଭାରତ ସେବକ ସମାଜ' ନାମରେ ଦେଶରେ ଗୋଟିଏ ଅନୁଷ୍ଠାନ ଗଢ଼ାଯାଇଛି । ଏହିସବୁର ସାହାଯ୍ୟ ଓ ସହଯୋଗ ଗ୍ରହଣ କଲେ ଦେଶର ଉପଯୁକ୍ତ ଗ୍ରାମ-ସହାୟକ ତାଲିମ କରିବା କଷ୍ଟକର ହେବ ନାହିଁ । ବ୍ଲକ୍‌ର କୃଷିବିଶାରଦ, ସାମାଜିକ ଶିକ୍ଷାଦାତା ଓ ଗ୍ରାମସେବକ ଏହି ତିନିଜଣଙ୍କ ଉପରେ ଗ୍ରାମ-ସହାୟକ ତାଲିମ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାର ଦାୟିତ୍ୱ ଅର୍ପଣ କରି ବ୍ଲକ୍ ଅଫିସର ବିଭିନ୍ନ ବିଭାଗରୁ ସାହାଯ୍ୟ ସହଯୋଗ ଲାଭ କରିବାକୁ ଚେଷ୍ଟା କରିବେ । ଅନ୍ତ କମ୍‌ରେ ସାତଦିନ ପାଇଁ ଶିବିର କାର୍ଯ୍ୟ ଚଳିବ । ପଞ୍ଚାୟତ ଓ ଗ୍ରାମ-ସହାୟକ ତାଲିମ ପାଇବାକୁ ବଛା-ଯାଇଥିବା ଗ୍ରାମବାସୀମାନଙ୍କ ସାହାଯ୍ୟରେ ଆବଶ୍ୟକୀୟ ଖାଦ୍ୟ ପଦାର୍ଥ ସଂଗ୍ରହ କରାଯାଇ ପାରିବ । ଜଣେ ଗ୍ରାମ ସହାୟକ ସକାଶେ ଦୈନିକ ଖର୍ଚ୍ଚ ପରିମାଣ ବ୍ଲକ୍‌ରେ ବଜେଟ୍‌ରେ ନିର୍ଦ୍ଦିଷ୍ଟ ଅଛି, ସୁତରାଂ ଅର୍ଥ ଅଭାବ ନାହିଁ । ଅର୍ଥାଭାବରୁ କାମ ହୋଇ ପାରୁନାହିଁ ତାହା ନୁହେଁ । ଯୋଜନାର ଲକ୍ଷ୍ୟ ଉପଲବ୍ଧି କରି କାର୍ଯ୍ୟ କରା ହେଉନାହିଁ । ଏହି କାରଣରୁ ଗ୍ରାମର ଅବସ୍ଥାରେ କୌଣସି ପରିବର୍ତ୍ତନ ଘଟୁନାହିଁ ।

## ଗ୍ରାମର ରୂପ ବଦଳିବାର କାରଣ

ଏହି ଅବସ୍ଥାକୁ ପରିବର୍ତ୍ତନ କରିବାକୁ ଉପାୟ ଚିନ୍ତା କରା-ଯାଇଛି । ବ୍ଲକ୍‌ର କାର୍ଯ୍ୟର ଲକ୍ଷ୍ୟ ସାଧାରଣ ଦେଶବାସୀ ତଥା ବ୍ଲକ୍ ଅନ୍ତର୍ଗତ ଗ୍ରାମସମୂହରେ ବାସକରୁଥିବା ଗ୍ରାମବାସୀ ଉପଲବ୍ଧି କରିବା ଦରକାର । ଗ୍ରାମର ସମୃଦ୍ଧ ଉନ୍ନତି ସାଧନ କରିବା ବ୍ଲକ୍‌ର ଲକ୍ଷ୍ୟ । ସୁତରାଂ ଯେଉଁମାନଙ୍କ ଉନ୍ନତିପାଇଁ ବ୍ଲକ୍‌ର କର୍ମଯୋଜନା ପ୍ରସ୍ତୁତ ହୋଇଛି ସେମାନେ ଏହାର ଦାୟିତ୍ୱ ବହନ କରି କାର୍ଯ୍ୟ-ସ୍ୱରୁ କରିବେ ଏବଂ ଅନ୍ୟ ଗ୍ରାମବାସୀମାନଙ୍କଦ୍ୱାରା କରାଇବେ । ଦାୟିତ୍ୱର କଥା ରହିଲେ ଅଧିକାରର ପ୍ରଶ୍ନ ଉଠୁଛି । ସୁତରାଂ ବ୍ଲକ୍‌ର କାର୍ଯ୍ୟରେ ଗ୍ରାମବାସୀମାନଙ୍କର ପୂରା ଅଧିକାର ରହିବା ଉଚିତ । ଗ୍ରାମବାସୀମାନେ ଯେଉଁ କାମ ଯେଉଁଠାରେ କରିବାକୁ ବାଛି ସ୍ଥିର ଠିକ୍ କରିଦେବେ ବ୍ଲକ୍ କର୍ମଚାରୀମାନେ ତାହା ହିଁ କରିବେ । ସେମାନଙ୍କ ଇଚ୍ଛା ବିରୁଦ୍ଧରେ କମ୍ବା ଅଜ୍ଞାତରେ କୌଣସି କାର୍ଯ୍ୟ ଗ୍ରାମ ଉପରେ ଲଦି ଦିଆଯିବ ନାହିଁ । ଏହା ହିଁ ହେଲା ଉପାୟ । ଏହି ଉପାୟ ଚିନ୍ତା କରାଯାଇଛି ଏବଂ ଦେଶର ପୁନ-ର୍ଗଠନ କାର୍ଯ୍ୟକ୍ରମର ପ୍ରତ୍ୟେକ କର୍ମକୁ କୌଣସି ଗୋଟିଏ ଲକ୍ଷ୍ୟ ରଖି ତାହା ଯୋଜନାର ଅନ୍ତର୍ଭୁକ୍ତ କରାଯାଇଛି, ଏହା ସମସ୍ତେ ବୁଝିବା ଉଚିତ ।

## ଲୋକେ ବୁଝିବାର ବାଟ

ଆମ୍ଭ ଦେଶରେ ଗ୍ରାମର ଅଧିବାସୀମାନେ ସେମାନଙ୍କ ଅଭାବ ଅସୁବିଧା ବୁଝି, ତାହା ସମାଧାନ କରିପାରୁଥିଲେ । କିନ୍ତୁ ଦେଶ ପରାଧୀନ ହେବା ଦ୍ୱାରା ଦେଶ ଓ ଗ୍ରାମର ପରିସ୍ଥିତିରେ ବିଶୃଙ୍ଖଳା ଘଟିଲା । କେହି କାହାର କଥା ଶୁଣିଲେ ନାହିଁ । ମିଳିମିଶି ଗ୍ରାମର

କୌଣସି କାର୍ଯ୍ୟ କରିବାକୁ ତାହାର ମନରେ ସ୍ପୃହା ଆଉ ଜନ୍ମିନା ନାହିଁ । ଗ୍ରାମକୁ ନ ଗୁହିଁ ସମସ୍ତେ ନିଜର ସ୍ୱାର୍ଥଚିନ୍ତାରେ ବୁଡ଼ି ରହିଲେ । କିନ୍ତୁ ଦେଶ ସ୍ୱାଧୀନ ହେବାପରେ ଗ୍ରାମର ଏପରି ଅବସ୍ଥା ରହିବା କଦାପି ବାଞ୍ଛନୀୟ ନୁହେଁ । ଗ୍ରାମ-ଜୀବନ ଦୁର୍ବଳ ଓ ରୁଗ୍ଣ ଅବସ୍ଥା ଧାରଣ କରିଛି । ଗ୍ରାମର ପୂର୍ବ ମନ ଓ ପୂର୍ବ ଶକ୍ତିକୁ ଜାଗ୍ରତ କରିବା ଦରକାର । ଗ୍ରାମର ବର୍ତ୍ତମାନ ଅବସ୍ଥାରେ ପରି-ବର୍ତ୍ତନ ଆଣିବାକୁ ହେଲେ ଗ୍ରାମର ଆମୂଳଚୂଳ ପରିବର୍ତ୍ତନ କରିବାକୁ ପଡ଼ିବ । ଏହି କାର୍ଯ୍ୟ ଅତି କଠିନ । ଏଥିପାଇଁ ସମୟ ଓ ଅର୍ଥ ଲୋଡ଼ା, ଏହା ଜଣେ ବ୍ୟକ୍ତିର କାମ ନୁହେଁ । ସ୍ୱରାଜ୍ୟ ସରକାର ଇଚ୍ଛାକଲେ ମଧ୍ୟ ଗ୍ରାମକୁ ନୂଆ କରି ଗଢ଼ିବା ପାଇଁ ଯେତେ ଯାହା ଦରକାର ତାହା ଯୋଗାଇ ପାରିବେ ନାହିଁ । ଦେଶର ପାଞ୍ଚଲକ୍ଷ ପଚିଶ ହଜାର ଗ୍ରାମ ଅଛି ସବୁ ଗ୍ରାମକୁ ଗଢ଼ିବାର ପୂରାଖର୍ଚ୍ଚ ସରକାର ବହନ କରିବାର ବଳ ନାହିଁ । ସରକାରକୁ ଦେଶବାସୀ ଗଠନ କରିଛନ୍ତି । ଦେଶକୁ ଗଠନ କରିବାକୁ ସରକାର କର୍ମଯୋଜନା ବାନ୍ଧିଛନ୍ତି । କର୍ମ-ଯୋଜନାରେ ଗ୍ରାମ ଗଠନ ପାଇଁ ବ୍ଲକ୍‌ର କାର୍ଯ୍ୟକ୍ରମ ସ୍ଥିର ହୋଇଛି । ଗ୍ରାମବାସୀମାନେ ସେମାନଙ୍କ ଗ୍ରାମର ଅବସ୍ଥା ବଦଳାଇବା ଉଦ୍ଦେଶ୍ୟରେ ଯାହା କରିବାକୁ ଇଚ୍ଛା କରିବେ ସେଥିରେ ସାହାଯ୍ୟ କରିବାର ବ୍ୟବସ୍ଥା ହୋଇଛି । ସୁତରାଂ ଗ୍ରମବାସୀମାନେ କହିବା ଦରକାର ସେମାନେ କଣ ସେମାନଙ୍କ ଗ୍ରାମ ପାଇଁ କରିବେ । କିନ୍ତୁ ଗ୍ରାମରେ କେହି ଗ୍ରାମର ଭଲମନ୍ଦ କଥା ବିଚାର କରୁନାହାନ୍ତି । କାମ କିପରି ହେବ ? ଏହିସବୁ ଦେଖି ଗ୍ରାମବାସୀମାନେ ଗ୍ରାମର ସମୂହ ଉନ୍ନତିକର କାର୍ଯ୍ୟ ଚିନ୍ତା କରିପାରିବାର ଉପାୟ ବାହା ଯାଇଛି । ଏହି ଉପାୟ ହେଉଛି ଗ୍ରାମବାସୀମାନଙ୍କ ହାତକୁ ଶାସନ ଅଧିକାରର କିଛି କ୍ଷମତା ଦବା ।

# ପଞ୍ଚାୟତକୁ ସୁଧାରିବାର ବାଟ

ଏହି ଉଦ୍ଦେଶ୍ୟରେ ଗ୍ରାମପଞ୍ଚାୟତ ଗଠନ କରାଯାଇଛି। ଗ୍ରାମବାସୀମାନେ ନିଜ ଭିତରୁ ଲୋକ ବାଛି ପଞ୍ଚାୟତ ଗଠନ କରିବେ। ଯେଉଁ ଲୋକ ନିଜକାମ ଭୁଲି ଗ୍ରାମର ଭଲମନ୍ଦ ଚିନ୍ତା କରି ଗ୍ରାମରେ କାମ କରେଇପାରିବ, ସେପରି ଲୋକକୁ ପଞ୍ଚାୟତ ଗଢ଼ିବା ପାଇଁ ବାଛିବା ଦରକାର। କିନ୍ତୁ ବର୍ତ୍ତମାନ ଗ୍ରାମବାସୀମାନେ ପଞ୍ଚାୟତକୁ ପଞ୍ଚ ବାଛିଲାବେଳେ କିଛି ବିଚାର କରୁନାହାନ୍ତି। ଯେଉଁମାନେ ପଞ୍ଚ ଅବା ସରପଞ୍ଚ ହେଉଛନ୍ତି—ସେମାନଙ୍କ ମଧ୍ୟରୁ ଅନେକଙ୍କ କାର୍ଯ୍ୟ କଳାପ ଗ୍ରାମର ଅମଙ୍ଗଳ କରୁଛି।

ଗ୍ରାମବାସୀଙ୍କ ମନରେ ଗ୍ରାମର ଉନ୍ନତିକର କାମ କରିବା ସକାଶେ ଆଗ୍ରହ ଜାତ କରେଇବା ପାଇଁ ଯେଉଁ କ୍ଷମତା ଓ ବଳ ସେମାନଙ୍କ ହାତରେ ଅର୍ପଣ କରାଗଲା, ତାହା ସେମାନଙ୍କ ବଳ ବୃଦ୍ଧି କରି ପାରୁନାହିଁ। ପଞ୍ଚାୟତ ଗଠନର ମର୍ମ ଓ ଗୁରୁତ୍ୱ ସମସ୍ତେ ବୁଝି ନ ପାରିବା ଦୋଷରୁ ଏପରି ଘଟୁଛି। ଗ୍ରାମବାସୀମାନଙ୍କ ହାତରେ ଯେଉଁ କ୍ଷମତା ଅର୍ପଣ କରାଯାଇଛି, ତାହା ଫେରାଇ ନିଆଯାଇ ନ ପାରେ। ପଞ୍ଚାୟତର ମୁଖ୍ୟ ସରପଞ୍ଚଙ୍କ ବିଚାର ଓ ବୁଦ୍ଧିରେ ସ୍ୱାର୍ଥ ସାଧନର ଲାଳସା ରହିଥିବାରୁ ଅନେକ ସରପଞ୍ଚ ତାଙ୍କର କର୍ତ୍ତବ୍ୟ କଣ ତାହା ବୁଝି ପାରୁନାହାନ୍ତି। ତେଣୁ ସେ କ୍ଷମତାର ଅପବ୍ୟବହାର କରୁଛନ୍ତି। କିନ୍ତୁ ଏପରି କ୍ଷମତାକୁ ଅପବ୍ୟବହାର କରିବା ନିଶ୍ଚୟ ଦୋଷାବହ। ଏଥିପାଇଁ ତାକୁ ଦଣ୍ଡଦେବା କଥା ବିଚାର ନ କରି ତାଙ୍କର ଦାୟିତ୍ୱଜ୍ଞାନ କିପରି ଜାତ ହେବ ତହିଁର ବିଚାର କରାଯାଇ ଉପାୟ ଅବଲମ୍ବନ କରାଯାଇଛି। ପୁଣି ପଞ୍ଚାୟତ ତଥା ସରପଞ୍ଚ ତାଙ୍କର ଦାୟିତ୍ୱ ବୁଝି କାର୍ଯ୍ୟ ନ କଲେ ବ୍ଲକର କର୍ମଯୋଜନା ନିଷ୍ଫଳ ହୋଇଯିବ। ପଞ୍ଚାୟତ କିପରି କାର୍ଯ୍ୟ କରିବ ତାହା ପୂର୍ବରୁ

ବିଷଦରୂପେ ବର୍ଣ୍ଣନା କରାଯାଉଅଛି । ଏଠାରେ ପଞ୍ଚାୟତିରାଜର କଥା ଓ ସରପଞ୍ଚର କାର୍ଯ୍ୟ କଳାପର ବିସ୍ତୃତ କରାଯାଉଛି ।

## ବ୍ଲକ୍ ଉନ୍ନୟନ ସମିତି ଗଠନ

ପଲ୍ଲୀ-ଜୀବନର ସମୂହ ଉନ୍ନତିକର କାର୍ଯ୍ୟ ହେଲା ବ୍ଲକ୍‌ର କର୍ମ-ଯୋଜନା । ବ୍ଲକର କର୍ମଚାରୀମାନେ ଗ୍ରାମକୁ ଯାଇ କାର୍ଯ୍ୟ କରନ୍ତି । ଗ୍ରାମରେ କାହାକୁ ନ ଜାଣି ହଠାତ୍ କାର୍ଯ୍ୟ କରିବା ସହଜ ନୁହେଁ । ଏଥିପାଇଁ ବ୍ଲକ୍ କର୍ମଚାରୀମାନଙ୍କୁ ପରାମର୍ଶ ଦେବାକୁ ପ୍ରଥମେ ଗୋଟିଏ ବ୍ଲକ୍ ପରାମର୍ଶ ଦାତା କମିଟି ଗଠନ କରି କାର୍ଯ୍ୟସବୁ ଆରମ୍ଭ କରା-ଯାଇଥିଲା । କିନ୍ତୁ ବ୍ଲକ୍ କାର୍ଯ୍ୟ ସନ୍ତୋଷଜନକ ନ ହେବାରୁ ତାହା ତଦନ୍ତ କରି ଦୋଷ ତ୍ରୁଟି ଜାଣିବା ଦରକାର ପଡ଼ିଲା । ଏଥିପାଇଁ ବଳବନ୍ତରାଏ ମେହେଟ୍ଟା କମିଟି ସରକାର ବସାଇଲେ । ଉକ୍ତ କମିଟି ଦେଶରେ ଯେତେ ବ୍ଲକ୍ ଯେଉଁଠାରେ ଖୋଲାଯାଇ କାମ କରା-ଯାଉଥିଲା, ସେସବୁର କାର୍ଯ୍ୟ କଳାପ ତଦନ୍ତ କଲେ । ଏପରି ତଦନ୍ତ କରି ଯାହା ଜାଣିବାକୁ ପାଇଲେ ତାହାର ଗୋଟିଏ ରିପୋର୍ଟ ସରକାରଙ୍କୁ ଦେଇଛନ୍ତି । ସେହି ରିପୋର୍ଟରେ ଦିଆଯାଇଥିବା ପରାମର୍ଶ ଅନୁସାରେ ବ୍ଲକ୍‌ର ପରାମର୍ଶଦାତା କମିଟିକୁ ବ୍ଲକ୍ ଉନ୍ନୟନ କମିଟିରେ ପରିଣତ କରାଯାଇଛି । ପରାମର୍ଶଦାତା କମିଟି କେବଳ ପରାମର୍ଶ ଦେଉଥିଲେ କିନ୍ତୁ ସେହି ପରାମର୍ଶକୁ ବ୍ଲକ ଅଫିସର ମାନିବାକୁ ବାଧ୍ୟ ନ ଥିଲେ । କିନ୍ତୁ ବର୍ତ୍ତମାନ ଯେଉଁ ବ୍ଲକ୍ ଉନ୍ନୟନ ସମିତି ଗଢ଼ା ଯାଇଛି ତାହାକୁ ପୂର୍ଣ୍ଣ ଅଧିକାର ଅର୍ପଣ କରାଯାଇଛି । ବ୍ଲକ୍ ଉନ୍ନୟନ ସମିତିର ସଭ୍ୟମାନେ ନିଜ ଭିତରୁ ଜଣକୁ ସଭାପତି ବାଛିବେ । ସରକାରୀ କର୍ମଚାରୀ ସଭାପତି ଆସନରେ ବସୁଥିଲେ । ତାହା ଆଉ ହୋଇ ପାରିବ ନାହିଁ । ସମିତି ଯାହା ନିଷ୍ପତ୍ତି କରିବେ

ତଦନୁସାରେ ବ୍ଲକ୍ ଅଫିସର କାମ କରିବେ । ସମିତିର କଥାକୁ ନ ମାନିଲେ, ତାଙ୍କର କର୍ତ୍ତବ୍ୟରେ ଅବହେଳା ଘଟିବ । ସେଥିପାଇଁ ବ୍ଲକ୍ ଅଫିସରଙ୍କୁ ସରକାରଙ୍କ ନିକଟରେ କୈଫିୟତ ଦେବାକୁ ପଡ଼ିବ । ବ୍ଲକ୍ ଉନ୍ନୟନ ସମିତି ବୈଠକରେ ବସି ସଭ୍ୟମାନେ ବ୍ଲକ୍ କାର୍ଯ୍ୟକୁ ଆଲୋଚନା କଲାବେଳେ, ବ୍ଲକ୍ ଅଫିସରଙ୍କ ସହିତ କୌଣସି ଘଟଣାରେ ମତପାର୍ଥକ୍ୟ ଘଟିଲେ ଉକ୍ତ ଘଟଣାର ତଦନ୍ତ କରାହେବ । ଜିଲ୍ଲା ମାଜିଷ୍ଟ୍ରେଟ ଏପରି ମତପାର୍ଥକ୍ୟ ଘଟିବା କାରଣ ସବୁ ବୁଝି ଗ୍ରାମ ବାସୀଙ୍କର ସୁବିଧା ଅସୁବିଧାକୁ ବିଚାରି ଯାହା ନିଷ୍ପତ୍ତି କରିଦେବେ ତାହାହିଁ କାର୍ଯ୍ୟକାରୀ କରାଯିବ ।

ବ୍ଲକ୍ ଉନ୍ନୟନ ସମିତିରେ ପଞ୍ଚାୟତରୁ ସରପଞ୍ଚମାନଙ୍କୁ ରଖାଯାଇଛି । ସରପଞ୍ଚମାନଙ୍କର କାର୍ଯ୍ୟକଳାପ ବିଚାର କଲେ ସେପରି ବ୍ୟକ୍ତିଙ୍କୁ ନେଇ ଯେଉଁ ଉନ୍ନୟନ ସମିତି ଗଢ଼ା ଯାଇ ତାହା ଉପରେ ଏତେ ବଡ଼ ଅଧିକାର ଅର୍ପଣ କରାଯାଇଛି ତହିଁର ଆକ୍ଷେପ ହେଉଛି । ଗ୍ରାମର ଭଲ ମନ୍ଦ ବୁଝିବାକୁ କିମ୍ବା ଗ୍ରାମବାସୀମାନଙ୍କୁ କୌଣସି କଥା ବୁଝାଇ କାର୍ଯ୍ୟ କରେଇବାକୁ ଯାହାର ମନରେ କୌଣସି ଭାବନା ନାହିଁ ସେପରି ବ୍ୟକ୍ତିଙ୍କୁ ବ୍ଲକ୍ ଉନ୍ନୟନ ସମିତିରେ ରଖାଯାଉଥିବାରୁ କୌଣସି କାର୍ଯ୍ୟ ହୋଇପାରୁ ନାହିଁ । ସରପଞ୍ଚ କୌଣସି ପ୍ରକାରେ ବାଛିଗଲେ ଗ୍ରାମର ସୁଖଦୁଃଖ ଚିନ୍ତା ତାଙ୍କ ମନରେ ସ୍ୱତଃ ଜାଗି ଉଠିବ ଏହା କଦାପି ସମ୍ଭବପର ନୁହେଁ । ସୁତରାଂ ଜାଣିବା ଶୁଣିବା ଲୋକ ଗ୍ରାମରୁ ବାଛି ସମିତିର ସଭ୍ୟ କରାଇଲେ ସେମାନଙ୍କଦ୍ୱାରା ଆଶାନୁରୂପ କାର୍ଯ୍ୟ ହୋଇ ପାରନ୍ତା । ଏହା ନିହାତି ଯୁକ୍ତିଯୁକ୍ତ କଥା । କିନ୍ତୁ ପ୍ରଜାଶକ୍ତି ଜାଗ୍ରତ କରି ଦେଶରେ ପଞ୍ଚାୟତ-ରାଜ ସ୍ଥାପନ କରିବା ହେଲା ମୁଖ୍ୟ ଉଦ୍ଦେଶ୍ୟ । ଗ୍ରାମର ସମୂହ ଉନ୍ନତିକର କାର୍ଯ୍ୟଦ୍ୱାରା ଏହି ପଞ୍ଚାୟତ-ରାଜ

ଗ୍ରାମରୁ ଗଢ଼ି ହୋଇ ଉଠିବ । ଗ୍ରାମର ଉନ୍ନତକର ପ୍ରତ୍ୟେକ କାର୍ଯ୍ୟକୁ ଗ୍ରାମରେ ବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି ଜାଣିବା ଏବଂ ବୁଝିବା ପାଇଁ ଆଗ୍ରହ ଜାତ ନ ହେଲେ ନ ଚଳେ । ଜଣେ ବ୍ୟକ୍ତି ଯେତେ ଜାଣିବାର କମ୍ବା ବୁଝିପାରିବାର ହେଲେ ମଧ୍ୟ ସେହି ଜଣକ କାର୍ଯ୍ୟ କରିବାରେ ଗ୍ରାମ ଶାସନ ଗଢ଼ି ହୋଇ ଉଠିବ ନାହିଁ ।

## ସରପଞ୍ଚଙ୍କ ମନ ଓ ବୁଦ୍ଧିର ପରିବର୍ତ୍ତନ ଦରକାର

ଗ୍ରାମର ସମୂହ ଉନ୍ନତିକର କାର୍ଯ୍ୟ ସମ୍ପାଦନ କରିବା ଅତି କଠିନ—ଏବଂ ତାହା ସମୟସାପେକ୍ଷ । ଆମ୍ଭଦେଶର ଗ୍ରାମସବୁ କପରି ସୁନ୍ଦର ଏବଂ ସ୍ବଚ୍ଛଳ ହେବ । ଗ୍ରାମରେ କୌଣସି ପ୍ରକାର ଦୁଃଖ ଦାରିଦ୍ର୍ୟର ଚିହ୍ନ ରହିବ ନାହିଁ, ଗ୍ରାମସବୁକୁ ସେହିପରି ଗଢ଼ିବାକୁ ହେବ । ଗ୍ରାମରେ ବାସକରୁଥିବା ନର ନାରୀଙ୍କ ମନରେ ଜାଗରଣ ଆଣିବା ଭଳି ଶକ୍ତି ସୃଷ୍ଟି ହୋଇନାହିଁ । ଘର୍ଷ ସମୟ ପରିଶ୍ରମ କଲେ ଆମ୍ଭେ ଯାହା ଇଚ୍ଛା କରୁଛେ ତାହା ପାଇପାରିବା । ଏଥି-ପାଇଁ ଅନବରତ କାର୍ଯ୍ୟରେ ଲାଗିରହିବ । କେତେ ଲୋକ ଆସିବେ, କେତେ ଯିବେ । ସୁତରାଂ ଗ୍ରାମରୁ ଜଣେ ଜାଣିବାର ଲୋକ କେବଳ ବାଛିଦେଲେ ତଦ୍ବାରା ଆମ୍ଭର ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ନାହିଁ । ଗ୍ରାମବାସୀମାନେ ସମସ୍ତେ ବୁଝିପାରିବା ଭଳି କାର୍ଯ୍ୟ ହେବା ଉଚିତ । ତାହାହେଲେ ସେମାନଙ୍କ ମନରେ ଦାୟିତ୍ୱଜ୍ଞାନ ଉଦ୍ଭବ ହୋଇପାରିବ ନାହିଁ । ଗ୍ରାମବାସୀମାନଙ୍କ ମନରେ ପ୍ରଜାତନ୍ତ୍ର ଶାସନ ଅର୍ଥାତ୍ ସ୍ୱରାଜ୍ୟ ପ୍ରତିଷ୍ଠାର ମହତ୍ତ୍ୱ ବୁଝିପାରିବାର ଶକ୍ତି ଜାଗ୍ରତ କରେଇବା ପାଇଁ ଶାସନ ବିକେନ୍ଦ୍ରୀକରଣ ଅନୁଷ୍ଠାନ ଗଢ଼ିବାକୁ ହେବ । ଗ୍ରାମର ଉନ୍ନତିକର ଯୋଜନାକୁ କାର୍ଯ୍ୟରେ ପରିଣତ କରିବାରେ ଏହି ଶାସନ ବିକେନ୍ଦ୍ରୀକରଣ ଅନୁଷ୍ଠାନର ମୂଳଭିତ୍ତି

ସ୍ଥାପନକରିବା କାର୍ଯ୍ୟ କରିବ । ଶାସନ ବିକେନ୍ଦ୍ରୀକରଣର ମୂଳ ଅନୁଷ୍ଠାନ ଗ୍ରାମ ପଞ୍ଚାୟତ । ଗ୍ରାମବାସୀଙ୍କ ହାତରେ ଗ୍ରାମଶାସନର କ୍ଷମତା ଅର୍ପଣ କରାଯାଇଛି । ସେମାନେ ପଞ୍ଚାୟତକୁ ଗଢ଼ିଛନ୍ତି । ତେଣୁ ପଞ୍ଚାୟତର ସଭାପତି ତଥା ସରପଞ୍ଚକୁ ବ୍ଲକ୍ ଉନ୍ନୟନ ସମିତିର ସଭ୍ୟ କରାଯାଇଛି, ସମିତିର ସଭ୍ୟ ହେବାରୁ ତାର କାର୍ଯ୍ୟର ପରିସର ବୃଦ୍ଧି ପାଇବ । ଏହାଦ୍ୱାରା ତାର ବୁଦ୍ଧି ବିଚାରରୁ ସଙ୍କୀର୍ଣ୍ଣ ସ୍ୱାର୍ଥ ଚିନ୍ତା ଦୂର ହୋଇପାରିବ ଏବଂ କର୍ତ୍ତବ୍ୟଜ୍ଞାନ ଉଦୟ ହେବ ବୋଲି ଆଶା କରାଯାଉଛି । ବ୍ଲକ୍ ଉନ୍ନୟନ ସମିତିରେ ପଞ୍ଚାୟତର ସରପଞ୍ଚମାନଙ୍କ ସହିତ ଷ୍ଟେଟ ବିଧାନ ସଭା ଓ ଭାରତର ପାର୍ଲିଆମେଣ୍ଟ ସଭ୍ୟ ମଧ୍ୟ ଅଛନ୍ତି । ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗର କର୍ମଚାରୀ ଅଛନ୍ତି । ସବ୍‌ଡିଭିଜନ ମାଜିଷ୍ଟ୍ରେଟ ରହିଛନ୍ତି । ଏହିପରି ଉଚ୍ଚପଦସ୍ଥ କର୍ମଚାରୀ ଓ ମାନ୍ୟଗଣ ସଦସ୍ୟମାନଙ୍କ ସହିତ ସମାନ ଆସନରେ ବସି ବ୍ଲକର ସମସ୍ତ ଉନ୍ନତିମୂଳକ କର୍ମଯୋଜନାକୁ କାର୍ଯ୍ୟରେ ପରିଣତ କରିବାର ପ୍ରଶ୍ନ ବିଚାର କରିବାର ସୁବିଧା ସରପଞ୍ଚ ଲାଭ କରିପାରୁଛନ୍ତି । ଏହି ଉନ୍ନୟନ ସମିତିରେ ପଞ୍ଚାୟତରେ ଯାହା କାର୍ଯ୍ୟ କରାଯିବ ତହିଁର ଆଲୋଚନା ହଉଛି ଏବଂ ସମିତିର ସଭ୍ୟମାନଙ୍କର ବହୁମତରେ ଯେଉଁ କାର୍ଯ୍ୟ ସ୍ଥିର ହେଉଛି ଉକ୍ତ କାର୍ଯ୍ୟ ସଂପାଦନ କରିବାର ଦାୟିତ୍ୱ ପଞ୍ଚାୟତ ଉପରେ ଅର୍ପଣ କରାଯାଉଛି । କେବଳ ତାହାନୁହେଁ ବ୍ଲକଉନ୍ନୟନ ସମିତିର ପ୍ରତ୍ୟେକ ସଭ୍ୟଙ୍କର ବ୍ଲକର ସମସ୍ତ କାର୍ଯ୍ୟକୁ ତଦନ୍ତ କରିବାର ଅଧିକାର ଅଛି । ସେମାନେ ଇଚ୍ଛାକଲେ ବ୍ଲକର ସବୁ ଗ୍ରାମକୁ ଯାଇ କେଉଁଠାରେ କିପରି କାର୍ଯ୍ୟ କରାଯାଉଛି ତାହା ଦେଖିପାରିବେ-ବୁଝିପାରିବେ, ଏବଂ କାର୍ଯ୍ୟରେ ସାହାଯ୍ୟ କରିବାକୁ ଗ୍ରାମବାସୀମାନଙ୍କୁ ବୁଝାଇ ପାରିବେ । ବ୍ଲକ କର୍ମଚାରୀମାନଙ୍କର ଦୋଷ ତ୍ରୁଟି ମଧ୍ୟ ଦେଖାଇଦେଇ

ପାରିବେ । ବ୍ଲକ୍ ଉନ୍ନୟନ ସମିତିର ସଭ୍ୟ ହେବାଦ୍ୱାରା ସରପଞ୍ଚଙ୍କର କର୍ମକ୍ଷେତ୍ର ବିସ୍ତାର ତାଙ୍କର ମର୍ଯ୍ୟାଦା ଓ ଅଧିକାର ମଧ୍ୟ ବୃଦ୍ଧି ପାଇଛି ।

## ବ୍ଲକ୍ ଉନ୍ନୟନ ସମିତି ପଲ୍ଲୀର ପାର୍ଲିଆମେଣ୍ଟ

ବ୍ଲକ୍ ସମିତିରେ ଯାହା ଆଲୋଚନା କରାଯିବ, ତାହା ପୂର୍ବରୁ ପଞ୍ଚାୟତରେ ଆଲୋଚିତ ହୋଇଥିବ । ପଞ୍ଚାୟତରେ ଯାହା ଆଲୋଚନା କରାଯିବ, ତାହା ପ୍ରତି ଗ୍ରାମରେ ଆଗରୁ ଜଣାଇ ଦିଆଯାଇଥିବ । ଷ୍ଟେଟ୍‌ର ବିଧାନ ସଭା ଓ ଭାରତର ପାର୍ଲିଆମେଣ୍ଟରେ ଯେତେବେଳେ ଯାହା ଆଲୋଚନା ପଡ଼ୁଛି ତାକୁ ଜାଣିବା ପାଇଁ ଦେଶବାସୀଙ୍କ ମନରେ ଆଗ୍ରହ ଜାତ ହେଉଛି । କାରଣ ତଦ୍ୱାରା ଦେଶର ଭାଗ୍ୟ ଗଠନ କରାଯାଉଛି । ବ୍ଲକ୍ ଉନ୍ନୟନ ସମିତିରେ ଯାହା ଆଲୋଚନା ହେଉଛି ତଦ୍ୱାରା ଗ୍ରାମର ମଧ୍ୟ ଭାଗ୍ୟ ଗଠନ କରାଯାଉଛି କହିଲେ ଚଳେ । ସୁତରାଂ ବ୍ଲକ୍ ଉନ୍ନୟନ ସମିତିର ଆଲୋଚନା ବ୍ଲକ୍ ଅନ୍ତର୍ଗତ ସବୁ ଗ୍ରାମରେ ବାସ କରୁଥିବା ନରନାରୀ ସମସ୍ତେ ଜାଣିବା ଉଚିତ । ଏହା କିପରି ସମ୍ଭବପର ହୋଇ ପାରିବ, ଏହି ଉଦ୍ଦେଶ୍ୟରେ କୌଣସି ଉନ୍ନତିକର କର୍ମଯୋଜନାର କାର୍ଯ୍ୟ ଉନ୍ନୟନ ସମିତିରେ ଆଲୋଚନା କରିବା ପୂର୍ବରୁ ତାହା ପଞ୍ଚାୟତରେ ଆଲୋଚିତ ହୋଇ ଗୃହୀତ ହୋଇଥିବ । ଗ୍ରାମମାନଙ୍କ ଉନ୍ନତିମୂଳକ କାର୍ଯ୍ୟର ଆଲୋଚନା ଆଗ ପଞ୍ଚାୟତରେ ପଡ଼ିବ । ପଞ୍ଚାୟତରେ ଯାହା ଆଲୋଚନା କରାଯିବ ତାହା ପୂର୍ବରୁ ଗ୍ରାମରେ ଗ୍ରାମବାସୀମାନେ ଭାବି ବିଚାରି ସ୍ଥିର କରିଥିବେ । ଗ୍ରାମରେ ଯାହା ସ୍ଥିର କରାଯିବ, ତାହା ପଞ୍ଚାୟତ ବୈଠକରେ ବସି ବିଚାର କରି ଗ୍ରହଣ କଲାପରେ, ତାହା ବ୍ଲକ୍ ସମିତିର ମଞ୍ଜୁର ପାଇଁ ବ୍ଲକ୍ ଅଫିସରଙ୍କ ନିକଟକୁ ପଠାଯିବ ।

ବ୍ଲକ୍‌ସମିତିର ବୈଠକରେ ସରପଞ୍ଚ ତାଙ୍କ ପଞ୍ଚାୟତରୁ ଦିଆ ଯାଇଥିବା କର୍ମ ଯୋଜନାକୁ ମଞ୍ଜୁର କରାଇ ନେବାକୁ ଯତ୍ନ କରିବେ । କାରଣ ବ୍ଲକ୍ ସମିତିରେ ଯେଉଁ କାର୍ଯ୍ୟ ମଞ୍ଜୁର ପାଇବ ତାହା ହିଁ କେବଳ ଗ୍ରାମରେ କରାଯିବ । ଏହିପରି ଗ୍ରାମର ଉନ୍ନତି ବ୍ଲକ୍ ସମିତିର ମଞ୍ଜୁର ଉପରେ ନିର୍ଭର କରୁଥିବାରୁ ଗ୍ରାମବାସୀମାନେ ତାହା ଜାଣିବାକୁ ମନ ବଳେଇବା ଦରକାର । ଗ୍ରାମବାସୀମାନଙ୍କର ମନରେ ବ୍ଲକ୍ ଉନ୍ନୟନ ସମିତି ଏବଂ ଗ୍ରାମ ପଞ୍ଚାୟତର କାର୍ଯ୍ୟକୁ ଜାଣିବାକୁ ଆଗ୍ରହ ପ୍ରକାଶ ପାଇପାରିଲେ ଦେଶର ମୂଳଦୁଆ ଟାଣକରି ଗଢ଼ିବା କଠିନ ବୋଧ ହେବନାହିଁ । ସରପଞ୍ଚଙ୍କ ବାହାଦୁରି ରହିଯିବ । ପଞ୍ଚାୟତର ସ୍ୱରୂପ ବଦଳି ଯିବ । ସରକାରୀ କର୍ମଚାରୀ ନିଜର କର୍ତ୍ତବ୍ୟ କର୍ମ କରିବାରେ ଅବହେଳା ନ କରି ବରଂ ଲୋକଙ୍କ ସେବା କାର୍ଯ୍ୟ କରି ପାରୁଛନ୍ତି ବୋଲି ମନରେ ଆନନ୍ଦ ଅନୁଭବ କରିପାରିବେ ।

## ଉନ୍ନୟନ ସମିତି ସଭ୍ୟଙ୍କ କର୍ତ୍ତବ୍ୟ

ଅଧିକାର ମିଳିଲେ କାର୍ଯ୍ୟ କରିବାର ମାର୍ଗ ଅନେକ ପରିମାଣରେ ସୁଗମ ହୁଏ । କିନ୍ତୁ, ଅଧିକାର ପଛକୁ ମନରେ ଦାୟିତ୍ୱ ଜ୍ଞାନ ନ ଆସିଲେ ପ୍ରାପ୍ତ ଅଧିକାରର କୌଣସି ମୂଲ୍ୟ ରହେନାହିଁ । ଦେଶ ସ୍ୱାଧୀନ ହେବାପରେ ଦେଶର ବଳ ଓ ସାମର୍ଥ୍ୟ ବୃଦ୍ଧି କରିବା ପାଇଁ ବାଟ ଫିଟିଛି । କିନ୍ତୁ ଦେଶର ଅଧିବାସୀଙ୍କ ମନରେ ଦେଶପ୍ରତି ପ୍ରଗାଢ଼ ଅନୁରକ୍ତିର ଭାବନା ସଞ୍ଚାର ନ ହେଲେ ଦେଶର ଉନ୍ନତିକର ଯୋଜନା ରୂପରେଖ ଦେବା କଠିନ ହୁଏ । ଆଜି ବ୍ଲକ୍ ସ୍ଥାପନ କରି ଗ୍ରାମର ସମୃଦ୍ଧ ଉନ୍ନତିକର କର୍ମଯୋଜନା କାର୍ଯ୍ୟକାରୀ କରାଯାଉଛି ସତ୍ୟ କିନ୍ତୁ ତାହା ସମସ୍ତଙ୍କର ମନକୁ ଆକର୍ଷଣ

କରିପାରୁ ନାହିଁ । ଦେଶକୁ ସ୍ୱାଧୀନ କରି ପ୍ରଜାତନ୍ତ୍ର ଶାସନ ପ୍ରତିଷ୍ଠା କରାଯାଇଛି । ପ୍ରଜାତନ୍ତ୍ର ଶାସନ ଦ୍ୱାରା ଦେଶର ନରନାରୀଙ୍କ ହାତକୁ ଯେଉଁ ଶାସନ କ୍ଷମତା ଆସିଲା ତା'ର ବଳରେ ପ୍ରତ୍ୟେକ ବ୍ୟକ୍ତି ନିଜର ପରିବାର, ନିଜ ଗ୍ରାମ ଓ ଦେଶର ଉନ୍ନତି ସାଧନ କରିବାକୁ ସୁଯୋଗ ସୁବିଧା ଲାଭ କରି ପାରିବ । ଦେଶର ସାଧାରଣ ନର ନାରୀ ନିଜର ଭାଗ୍ୟ ଗଠନ କରିବା ପାଇଁ ସମସ୍ତ ପ୍ରକାର ସୁବିଧା ସୁଯୋଗ ପାଇ ପାରିଲା ଭଳି ବ୍ୟବସ୍ଥା ବ୍ଲକ୍ କର୍ମ-ଯୋଜନାରେ ରଖାଯାଇଛି । ଏହି କର୍ମଯୋଜନାରେ ଯାହାସବୁ ଅଛି, ତାହାକୁ ବ୍ୟବହାର କରି ଜାଣିଲେ ଗ୍ରାମର ଦୁଃଖ ରହିବ ନାହିଁ । ଏଥିପ୍ରତି ଗ୍ରାମବାସୀମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଲେ କାମ କରିବା ସହଜସାଧ୍ୟ ହୋଇ ପାରନ୍ତା । ଗ୍ରାମବାସୀଙ୍କ ଦୃଷ୍ଟି ଆକର୍ଷଣ କରାଇବା ଅର୍ଥ ଗ୍ରାମରେ ନୂତନ ଜୀବନୀ ଶକ୍ତି ସଂଚାର କରିବା ଗ୍ରାମର ନରନାରୀଙ୍କ କର୍ମଜୀବନରେ ପରିବର୍ତ୍ତନ ଆଣିବା ସେମାନଙ୍କ ଦୈନିକ କାର୍ଯ୍ୟ ଓ ଚିନ୍ତାକୁ ପ୍ରଭାବିତ କଲାଭଳି ଗ୍ରାମରେ ସଂଗଠନ ଗଢ଼ିବା । ଏହି ଉଦ୍ଦେଶ୍ୟରେ କେବଳ ଗ୍ରାମରେ ବିଭିନ୍ନ ସଂଗଠନ କରାଯାଉଛି । ଗ୍ରାମ ପଞ୍ଚାୟତ ଆଇନ କରି ପଞ୍ଚାୟତ ରାଜ ସ୍ଥାପନର କଳ୍ପନା କରା-ଯାଇଛି । ବ୍ଲକ୍ ସ୍ଥାପନ କରି ତାହାର କାର୍ଯ୍ୟକୁ ନିୟନ୍ତ୍ରଣ କରିବାକୁ ବ୍ଲକ୍ ଉନ୍ନୟନ ସମିତି ଗଢ଼ା ଯାଇଛି । ତଥାପି ଗ୍ରାମ-ଜୀବନରେ ଯେଉଁ ଶକ୍ତି ଜାଗରଣ କରିପାରିଲେ ଗ୍ରାମ ତଥା ଦେଶର ମୁଖ ଉଜ୍ଜ୍ୱଳ ହୋଇ ପାରିବ ତାହା ହେଉ ନାହିଁ । ବ୍ଲକ୍ ଉନ୍ନୟନ ସମିତିର ସଭ୍ୟମାନେ ସେମାନଙ୍କର ଦାୟିତ୍ୱ ହୃଦୟଙ୍ଗମ କରି କାର୍ଯ୍ୟ କରୁ ନ ଥିବାରୁ ସେମାନଙ୍କ କାର୍ଯ୍ୟ କରିବା ମାର୍ଗ ସୁଗମ କରିବା ପାଇଁ ବିଭିନ୍ନ କମିଟିରେ ବିଭକ୍ତ କରିବାର କଳ୍ପନା କରାଯାଉଛି । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଇତ୍ୟାଦି କାର୍ଯ୍ୟପାଇଁ ବ୍ଲକ୍ ଉନ୍ନୟନ ସମିତିର ସଭ୍ୟମାନେ

ଭିନ୍ନ ବିଭାଗ ପାଇଁ ଭିନ୍ନ ଭିନ୍ନ କମିଟି ଗଠନ କରିବେ । ପ୍ରତ୍ୟେକ କମିଟିକୁ ଯେଉଁ କର୍ମର ଦାୟିତ୍ୱ ଦିଆଯିବ, ସେହି କମିଟି ସେହି କାର୍ଯ୍ୟର ଉନ୍ନତି ସାଧନ କରିବାକୁ ଚିନ୍ତାକରି ଉପାୟ ଉଦ୍ଭାବନ କରିବେ ଏବଂ ତଦନୁସାରେ ସମସ୍ତ ବ୍ଲକ୍‌ରେ କାର୍ଯ୍ୟ କରାଯିବ । ଗ୍ରାମ ପଞ୍ଚାୟତରେ ଗଢ଼ା ଯାଇଥିବା ବିଭାଗୀୟ କମିଟିର ସାହାଯ୍ୟ ସହଯୋଗରେ ସେମାନେ ସମସ୍ତ ବ୍ଲକ୍ ପାଇଁ ଉନ୍ନତିମୂଳକ କାର୍ଯ୍ୟର କଳ୍ପନା କରିବେ । ଏହିପରି ଯେଉଁ କର୍ମଯୋଜନା ବିଭାଗୀୟ କମିଟି ଦ୍ୱାରା ପ୍ରସ୍ତୁତ ହେବ, ତାହା ବ୍ଲକ୍ ଉନ୍ନୟନ ସମିତିର ଅନୁମୋଦନରେ କାର୍ଯ୍ୟ କରାଯିବ।

## ବ୍ଲକ୍ କାମପାଇଁ ଅର୍ଥ ଯୋଜନା

ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କର୍ମଯୋଜନାକୁ କାର୍ଯ୍ୟକାରୀ କରିବାକୁ ଏହିପରି ସଂଗଠନ ସବୁ ଗଠନ କରିବାର ବ୍ୟବସ୍ଥା କରା ଯାଇଛି । ଗ୍ରାମ-ସହାୟକ ରୂପେ କାର୍ଯ୍ୟ କରିବାକୁ ଗ୍ରାମମାନଙ୍କରୁ ଉପଯୁକ୍ତ ଲୋକ ବାଛି ତାଲିମ କରିବାର ବ୍ୟବସ୍ଥା ହୋଇଛି । ସମସ୍ତ ପ୍ରକାର କାର୍ଯ୍ୟପାଇଁ ଅର୍ଥର ଅଭାବ ନାହିଁ, ବ୍ଲକର କର୍ମ ଯୋଜନା ଦଶବର୍ଷ ପାଇଁ ଗଢ଼ାଯାଇଛି । ଏଥିପାଇଁ ୧୨ ଲକ୍ଷଟଙ୍କା ଖର୍ଚ୍ଚ ହେବ । ଏହା ବ୍ୟତୀତ ଦେଶର ବହୁମୁଖୀ ଉନ୍ନତି ସାଧନ କରିବା ପାଇଁ ଅନେକ ଅନୁଷ୍ଠାନ ଗଢ଼ାଯାଇ ପ୍ରଚୁର ଅର୍ଥ ବ୍ୟୟର ବ୍ୟବସ୍ଥା କରାଯାଇଅଛି । ଖଦି ଓ ଗ୍ରାମୋଦ୍ୟୋଗ କମିସନ, ହସ୍ତତନ୍ତ ବୋର୍ଡ, ହସ୍ତଶିଳ୍ପ ବୋର୍ଡ, ନଡ଼ିଆକତା ବୋର୍ଡ, କ୍ଷୁଦ୍ରଶିଳ୍ପ ବୋର୍ଡ ଆଦି ବହୁ ଅନୁଷ୍ଠାନ ଗଢ଼ାଯାଇଛି । ଏହି ସବୁ ଅନୁଷ୍ଠାନ ଗ୍ରାମ ମାନଙ୍କରେ କାର୍ଯ୍ୟ କରିବେ । ଗ୍ରାମର ସମୃଦ୍ଧ ଉନ୍ନତି ପାଇଁ ଏହି ସବୁ ଅନୁଷ୍ଠାନମାନଙ୍କରୁ ଅର୍ଥ ସାହାଯ୍ୟ ମିଳିପାରିବ । ଏହା ଛଡ଼ା

ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଓ ପଶୁପାଳନ ଆଦି ସରକାରଙ୍କର ଯେଉଁ ବିଭାଗ ଅଛି, ସେମାନେ ନିଜ ବିଭାଗୀୟ କାର୍ଯ୍ୟର ପ୍ରସାର ପାଇଁ ବହୁତ ଟଙ୍କା ଖର୍ଚ୍ଚ କରୁଛନ୍ତି । ସେହିସବୁ ବିଭାଗୀୟ କାର୍ଯ୍ୟ ଗ୍ରାମରେ କରିବାକୁ ଅର୍ଥ ସାହାଯ୍ୟ ମିଳି ପାରିବ । ଏହା ଛଡ଼ା ଗ୍ରାମ ପଞ୍ଚାୟତର ଖର୍ଚ୍ଚପାଇଁ ଗ୍ରାମବାସୀଙ୍କ ଠାରୁ ଟିକସଆକାରରେ କିଛି ଆଦାୟ କରାଯାଉଛି । ଅର୍ଥର ଅଭାବ ନାହିଁ । ବ୍ଲକ୍ ଉନ୍ନୟନ ସମିତିର ସଭ୍ୟମାନେ ଏସବୁ ଜାଣିବା ଓ ବୁଝିବା ଉଚିତ । ଗ୍ରାମରେ ନାନା ଜାତିର ଲୋକ ବାସ କରନ୍ତି । କୌଣସି ନା କୌଣସି ଗୋଟିଏ ବ୍ୟବସାୟ ତାହାର ତାହାର କୌଳିକ ବ୍ୟବସାୟ । ଗ୍ରାମକୁ ସମ୍ପୂର୍ଣ୍ଣ ଆତ୍ମନିର୍ଭରଶୀଳ କରି ପୂର୍ବେ ଗଢ଼ା ଯାଇଥିଲା । ତେଣୁ ଗ୍ରାମରେ ତନ୍ତି, ବଢ଼େଇ, କମାର, କୁମ୍ଭାର, ଗଉଡ଼, ତେଲି, କଂସାରି ଆଦି ବିଭିନ୍ନ ଜାତିର ଲୋକେ ବାସ କରି ନିଜର କୌଳିକ ବ୍ୟବସାୟ କରୁଥିଲେ । ଗ୍ରାମରେ ସମସ୍ତେ ସମସ୍ତଙ୍କ ଉପରେ ନିର୍ଭର କରି ଚଳୁଥିଲେ । ଆଜି ଗ୍ରାମରେ କେହି କାହାକୁ ଗୁହୁଁ ନାହିଁ । କୌଳିକ ବ୍ୟବସାୟରେ ଜୀବିକା ନିର୍ବାହ କରିବା ଦୁରୂହ ବ୍ୟାପାର ହୋଇ ପଡ଼ିଛି । ଗ୍ରାମର ଆର୍ଥିକ ଅବସ୍ଥାର ଉନ୍ନତି ସାଧନ କରିବାକୁ ପ୍ରଥମେ ଏହି କୌଳିକ ବୃତ୍ତିଗୁଡ଼ିକର ଉନ୍ନତି ସାଧନ କରିବାକୁ ହେବ । ଏହାର ଆବଶ୍ୟକତା ଉପଲବ୍ଧି କରି ବିଭିନ୍ନ ବୋର୍ଡ଼ ଗଠନ କରାଯାଇ ଅର୍ଥର ବ୍ୟବସ୍ଥା କରାଯାଇ-ଅଛି । ବ୍ଲକ୍‌ର କର୍ମୀବୃନ୍ଦ ଓ ଉନ୍ନୟନ ସମିତିର ସଭ୍ୟ ଉଭୟଙ୍କ ସହଯୋଗରେ କୌଣସି କାର୍ଯ୍ୟ କଷ୍ଟକର ହେବ ନାହିଁ । ସେମାନେ ସମସ୍ତେ ଗ୍ରାମର ସମୂହ ଉନ୍ନତିମୂଳକ ଯୋଜନାର ଲକ୍ଷ୍ୟକୁ ସ୍ମରଣ କରୁନାହାନ୍ତି । ସେଥିପାଇଁ କାମ କରିବାକୁ ବାଟ ପାଉନାହାନ୍ତି । କର୍ମୀବୃନ୍ଦ ଓ ସମିତିର ସଭ୍ୟ ପ୍ରତ୍ୟେକେ ଗୋଟିଏ ଗୋଟିଏ କାର୍ଯ୍ୟକୁ

ଆପଣାର କର୍ତ୍ତବ୍ୟ କର୍ମଠୁ ଯେପେ ବାନ୍ତୁ ଦେଇ ପାରିଲେ ଅନେକ କାର୍ଯ୍ୟ ହୋଇପାରନ୍ତା । କେବଳ ସମିତିର ବୈଠକରେ ଯୋଗଦାନ କରିବା ବଡ଼ କାମ ନୁହେଁ । ସେଥିକରେ କର୍ତ୍ତବ୍ୟ ସମ୍ପାଦନ କରାଯାଇ ନ ପାରେ । ଯେଉଁ ବ୍ୟକ୍ତି ଯେ କୌଣସି କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିବେ, ତହିଁର ଉନ୍ନତିପାଇଁ ସେ ବ୍ଲକ୍‌ର ସବୁ ପଞ୍ଚାୟତର କାର୍ଯ୍ୟ ପ୍ରତି ଦୃଷ୍ଟି ଦେବେ । ବ୍ଲକ୍ ଅଫିସରଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି ପଞ୍ଚାୟତକୁ ଗ୍ରାମର ଉନ୍ନତିମୂଳକ କାର୍ଯ୍ୟରେ ବାଟ ଦେଖାଇବା । ପଞ୍ଚାୟତ ଅନ୍ତର୍ଗତ ପ୍ରତ୍ୟେକ ଗ୍ରାମରେ ବାସ କରୁଥିବା ପ୍ରତ୍ୟେକ ପରିବାରର ଅବସ୍ଥା ଉନ୍ନତ କରିବାକୁ କଣ କରାଯାଇ ପାରିବ ତାହା ଚିନ୍ତାକରି ବାଟ ଦେଖାଇ ଦେବା ଗ୍ରାମସେବକଙ୍କର କାର୍ଯ୍ୟ । ବର୍ଷକରେ ଗୋଟିଏ ପରିବାର ଯାହା କାମ କରିଥିବେ ତାହାର ହିସାବ ଲେଖି ରଖିବା ଦରକାର । ଏହି କର୍ମ ବିବରଣୀରୁ ଜଣା ପଡ଼ିବ କାର୍ଯ୍ୟର ଅଗ୍ରଗତି । କୃଷିର ଉନ୍ନତି କରିବାକୁ କମ୍ପୋଷ୍ଟ ଖାତ କେତୋଟି କରିଛନ୍ତି, ପିଲାମାନେ ପାଠ ପଢ଼ୁଛନ୍ତି କି ନାହିଁ, ସ୍ୱାସ୍ଥ୍ୟପାଇଁ ଘରବାଡ଼ି ପରିଷ୍କାର ରଖିବା, ଧୂଆଁ ନିବାରକ ଚୂଲି କରିବା, ମଳମୂତ୍ର ତ୍ୟାଗ ପାଇଁ ଉପଯୁକ୍ତ ବ୍ୟବସ୍ଥା କରିବା, ବୃକ୍ଷ ରୋପଣ କେତେ କରା ଯାଇଛି, ଗ୍ରାମର ସାଧାରଣ କାମରେ ଶ୍ରମଦାନ କେତେଜଣ ଦେଉଛନ୍ତି, ସ୍ୱଳ୍ପ ସଞ୍ଚୟ ପାଣ୍ଠିରେ କେତେ ଜମା କରିଛନ୍ତି ଇତ୍ୟାଦି କାର୍ଯ୍ୟର ବିବରଣୀ ଲେଖା ଥିବାରୁ ଦେଖିଲେ ଜଣା ପଡ଼ିବ, ଗ୍ରାମରେ କପରି କାମ କରାଯାଉଛି । ଗୋଟିଏ ପଞ୍ଚାୟତରେ କେତେଗୋଟି ଗ୍ରାମ ଏବଂ ପ୍ରତି ଗ୍ରାମରେ କେତେ ପରିବାର ଅଛନ୍ତି । ସେ ସମସ୍ତଙ୍କୁ କାର୍ଯ୍ୟର ବାଟ ବତାଇ ବିବରଣୀ ସଂଗ୍ରହ କରିବା ଜଣେ ଗ୍ରାମ ସେବକ ପକ୍ଷରେ ସମ୍ଭବପର ନୁହେଁ । ଗ୍ରାମ ପଞ୍ଚ ଓ

ଗ୍ରାମ-ସହାୟକ ଗ୍ରାମସେବକଙ୍କୁ ସାହାଯ୍ୟ କରିବାର କଥା। ପଞ୍ଚାୟତର ସରପଞ୍ଚ ବ୍ଲକ୍ ଉନ୍ନୟନ ସମିତିର ସଭ୍ୟ। ତାଙ୍କର ଦାୟିତ୍ୱ ବହୁତ। ତାଙ୍କର ଏସବୁ କାର୍ଯ୍ୟରେ ସାହାଯ୍ୟ କରିବାର କଥା। ବ୍ଲକ୍ ଅଫିସର ଓ ଅନ୍ୟାନ୍ୟ କର୍ମଚାରୀମାନେ ଗ୍ରାମ ପରିଦର୍ଶନ କରି କପରି କାମ ହେଉଛି ଦେଖିବେ। ଗ୍ରାମବାସୀମାନଙ୍କ ସହିତ ବସି ଗ୍ରାମର ଭଲମନ୍ଦ ବିଚାର କରି ଗ୍ରାମବାସୀମାନଙ୍କୁ ବୁଝାଇବେ ଓ ପରାମର୍ଶ ଦେବେ। ବ୍ଲକ୍‌ର ପ୍ରତି ପଞ୍ଚାୟତ ଓ ପ୍ରତି ଗ୍ରାମରେ ଉନ୍ନତିମୂଳକ ଯୋଜନାର କାର୍ଯ୍ୟ ସମସ୍ତଙ୍କୁ ପ୍ରଭାବିତ କରୁଥିବାର ଗ୍ରାମବାସୀଙ୍କର ଦୈନନ୍ଦିନ ଜୀବନରୁ ବୁଝାପଡ଼ିବା ଉଚିତ।

## ଦେଶବାସୀ ଓ ସରକାରୀ କର୍ମଚାରୀ ଉଭୟଙ୍କ ଶିକ୍ଷାଦାନ ଓ ଟ୍ରେନିଙ୍ଗ୍ କ୍ୟାମ୍ପ

ବ୍ଲକର କର୍ମଯୋଜନା ଜନସାଧାରଣଙ୍କ କାର୍ଯ୍ୟ ଅଟେ। ଗ୍ରାମର ସମୃଦ୍ଧ ଉନ୍ନତି ସାଧନ କରିବା ଉଦ୍ଦେଶ୍ୟରେ ଯେଉଁ କାର୍ଯ୍ୟ କରିବାକୁ ହେଉଛି ତାହା ଗ୍ରାମର ପ୍ରତ୍ୟେକ ପରିବାର ପାଳନ କଲେ ନିଶ୍ଚୟ ଉପକୃତ ହେବେ। ବ୍ଲକ୍‌ର କର୍ମଯୋଜନା ବୁଝିବା କଷ୍ଟକର ନୁହେଁ। କିନ୍ତୁ ଗ୍ରାମରେ ବାସକରୁଥିବା ପ୍ରତ୍ୟେକ ପରିବାରଙ୍କ ଆଖିକୁ କିଛି ଦେଖାଦେଲା ପରି ଜଣାଯାଉନାହିଁ। ଇଚ୍ଛାକଲେ ପ୍ରତ୍ୟେକ ପରିବାର ନିଜର ଉନ୍ନତି କରିବାକୁ ବାଟ ପାଇବା ଭଳି ବିଭିନ୍ନ ପ୍ରକାରର କର୍ମଯୋଜନା କରାଯାଇଛି। ଯଦି କାହାର ଆଖିକୁ କିଛି ଦେଖା ନ ପଡ଼େ ତେବେ କୌଣସି କାର୍ଯ୍ୟର ଭଲ ମନ୍ଦ ଗୁଣ ବିଚାର ଅବା ବୁଝିବାର ପ୍ରଶ୍ନ ଉଠି ନ ପାରେ। ବ୍ଲକ୍‌ରେ କାମ କିଛି ହେଉନାହିଁ, ତାହା ନୁହେଁ। ଅନେକ କାମ ହେଉଛି। ତାହା ଦେଖିବାକୁ ଅବା ବୁଝିବାକୁ କାହାର ମନରେ

ଆଗ୍ରହ ଆସୁନାହିଁ । ଏପରି ବିଷମ ପରିସ୍ଥିତି ଅଧିକ ସମୟ ରହିଲେ ଦେଶର ଅପରିମେୟ ଅପଚୟ ଘଟିବ । ଦେଶର ଦୁଃଖ ଦୁର୍ଦ୍ଦଶା ଦୂର ହେବା ପରିବର୍ତ୍ତେ ଅଧିକ ବୃଦ୍ଧି ପାଇବ । ଦେଶବାସୀ ଓ ସରକାରୀ କର୍ମଚାରୀବର୍ଗ ଉଭୟଙ୍କ ଦାୟିତ୍ୱ ଜ୍ଞାନ ଅଭାବରୁ ଦେଶରେ ଏପରି ପରିସ୍ଥିତି ଉପୁଜିଛି ; ଏହାକୁ ସୁଧାରିବା ଦରକାର । ସୁତରାଂ ଦେଶବାସୀ ଓ ସରକାରୀ କର୍ମଚାରୀ ଉଭୟଙ୍କ ହୃଦୟରେ ଦେଶର କାର୍ଯ୍ୟପ୍ରତି ଆଗ୍ରହ ସୃଷ୍ଟି କରିବା ଉଦ୍ଦେଶ୍ୟରେ କର୍ମଯୋଜନା ବନାଯାଇଛି । ଏହି କର୍ମ ଯୋଜନାନୁସାରେ ତଳୁ ଅର୍ଥାତ୍ ଗ୍ରାମ ପଞ୍ଚାୟତର ଜଣେ ସାଧାରଣ ପିଅନଠାରୁ ଆରମ୍ଭ କରି ଜିଲ୍ଲା ମାଜିଷ୍ଟ୍ରେଟ,ବିଭାଗୀୟ ଉଚ୍ଚ କର୍ମଚାରୀ ଓ ମନ୍ତ୍ରୀ ପର୍ଯ୍ୟନ୍ତ ସମସ୍ତଙ୍କର କିଛି ଜାଣିବା ଓ ଶିଖିବା ପାଇଁ ବ୍ୟବସ୍ଥା କରାଯାଇଅଛି । ବିଧାନ ସଭା ଓ ପାର୍ଲିୟାମେଣ୍ଟର ସଭ୍ୟ ଏଥିରୁ ବାଦ ପଡ଼ିବେ ନାହିଁ । ନୂତନ ଭାରତ ଗଠନ କରିବାକୁ ଯେଉଁ କର୍ମଯୋଜନା ସବୁ ପ୍ରସ୍ତୁତ ହୋଇ କାର୍ଯ୍ୟକାରୀ କରାଯାଉଛି, ତହିଁର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଉପଲବ୍ଧି କରି ମନପ୍ରାଣ ଲଗାଇ କାର୍ଯ୍ୟ କରିବା ସକାଶେ ସମସ୍ତଙ୍କୁ ଟ୍ରେନିଙ୍ଗ୍ ଦେବାର ବ୍ୟବସ୍ଥା କଳ୍ପନା କରାଯାଇଅଛି ।

ବିଧାନ ସଭା ଓ ପାର୍ଲିଆମେଣ୍ଟର ସଭ୍ୟ କିମ୍ବା ମନ୍ତ୍ରୀ ହିଁଲେ ସବୁ ବିଷୟ ଜାଣିପାରିବେ ନାହିଁ କିମ୍ବା ସରକାରଙ୍କ ଚାକିରୀ କଲେ ସବୁକାର୍ଯ୍ୟ କରି ଦେଇ ପାରିବେ, ଏହା ଅସମ୍ଭବ । ଅଫିସରେ ବସି ହୁକୁମ ତାମିଲ କରିବା ଏବଂ ହୁକୁମ ଦେଇ କାଗଜପତ୍ର କାମ କରିବା; ଦେଶର ସାଧାରଣ ନରନାରୀଙ୍କ ମନରେ ଦେଶାତ୍ମବୋଧ ଜ୍ଞାନ ସୃଷ୍ଟି କରିବା କାର୍ଯ୍ୟ ସହିତ ସମାନ ହୋଇ ନ ପାରେ । ଏଥିପାଇଁ ଟ୍ରେନିଙ୍ଗ୍‌ର ବ୍ୟବସ୍ଥା କରାଯାଇଛି ।

ବିଶେଷତଃ ବିଧାନସଭା ଓ ପାର୍ଲିଆମେଣ୍ଟର ମାନ୍ୟଗଣ୍ୟ ସଭ୍ୟମାନଙ୍କ ଚିନ୍ତା ଓ କାର୍ଯ୍ୟ ଉପରେ ଦେଶର ଭାଗ୍ୟ ନିର୍ଭର କରୁଛି । ସେହିମାନଙ୍କ ମତାମତ ଦ୍ୱାରା ଦେଶରେ ଆଇନ୍ କାନୁନ୍ ତିଆରି ହେଉଛି ଏବଂ ଦେଶ ଗଠନ ପାଇଁ କର୍ମଯୋଜନା ମଞ୍ଜୁର ହେଉଛି । ସେମାନଙ୍କ ଟ୍ରେନିଙ୍ଗ୍ ପାଇଁ ପାଠଚକ୍ରର ବ୍ୟବସ୍ଥା କରାଯାଇଛି । ଏହି ପାଠଚକ୍ରରେ ଏହି ସଭ୍ୟମାନେ ଯୋଗ ଦେବେ ଏବଂ ସେମାନଙ୍କ ସଙ୍ଗକୁ ଯୋଜନା ସଂପୃକ୍ତ ସରକାରୀ କର୍ମଚାରୀମାନେ ଯୋଗଦେଇ ଯୋଜନାରେ ଥିବା ବିଷୟମାନ ଆଲୋଚନା କରିବେ । ଶାସନ ବିଧାନରେ ଲିପିବଦ୍ଧ ଆଦର୍ଶକୁ କାର୍ଯ୍ୟରେ ପରିଣତ କରିବା ଉଦ୍ଦେଶ୍ୟରେ ଯେଉଁସବୁ ବିଭିନ୍ନ କର୍ମଯୋଜନା ପ୍ରସ୍ତୁତ ହୋଇଛି ତାହାକୁ କପରି କୃତକାର୍ଯ୍ୟ କରିବାକୁ ପଡ଼ିବ ଇତ୍ୟାଦି ବିଷୟ ଆଲୋଚନା କରାଯିବ । ଏହି ଆଲୋଚନା ଦ୍ୱାରା ଉପସ୍ଥିତ ସଭ୍ୟ ଓ କର୍ମଚାରୀମାନଙ୍କ ମନରେ ଦେଶପ୍ରତି ସେମାନଙ୍କ କର୍ତ୍ତବ୍ୟ ଜ୍ଞାନ ବୃଦ୍ଧି ପାଇବାର ଆଶା ।

ବ୍ଲକ୍ କାର୍ଯ୍ୟକ୍ରମର ଗୁରୁତ୍ୱ ଉପଲବ୍ଧି କରାଇବାକୁ ଯେଉଁ ଟ୍ରେନିଙ୍ଗ୍ ଦେବାର ବ୍ୟବସ୍ଥା କରାଯାଇଛି, ସେଥିରେ ପଞ୍ଚାୟତ ସେକ୍ରେଟାରୀଙ୍କ ଟ୍ରେନିଙ୍ଗ୍ ପାଇବା ବିଶେଷ ଦରକାର । କାରଣ ଗ୍ରାମ ପଞ୍ଚାୟତ ଉପରେ ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କାର୍ଯ୍ୟର ସଫଳତା ବିଶେଷ ଭାବରେ ନିର୍ଭର କରେ । ଏଣୁ ତାହାର ସେକ୍ରେଟାରୀଙ୍କୁ ଟ୍ରେନିଙ୍ଗ୍ ଦେବାକୁ ପଡ଼ିବ । ଏଥିପାଇଁ ପ୍ରତି ଜିଲ୍ଲାରେ ଗୋଟିଏ ଟ୍ରେନିଙ୍ଗ୍ କେନ୍ଦ୍ର ସ୍ଥାପନ କରିବାର କଥା । ପ୍ରାଇମେରୀ ସ୍କୁଲର ଶିକ୍ଷକମାନଙ୍କୁ ଟ୍ରେନିଙ୍ଗ୍ ଦେବାକୁ ଟ୍ରେନିଙ୍ଗ୍ ସ୍କୁଲ୍ ଖୋଲାଗଲା ପରି ପଞ୍ଚାୟତ ଟ୍ରେନିଙ୍ଗ୍ ପାଇଁ ଜିଲ୍ଲାରେ ଗୋଟିଏ ଟ୍ରେନିଙ୍ଗ୍ ସ୍କୁଲ୍ ରହିବ । ଏଠାରେ ଦୁଇବର୍ଷପାଇଁ ଟ୍ରେନିଙ୍ଗ୍ ଦେବାର ବ୍ୟବସ୍ଥା କରାଯିବା

ଉଚିତ । ଦୁଇବର୍ଷ ଟ୍ରେନିଂ ପରେ ସେମାନଙ୍କୁ ଗୋଟିଏ ଉପାଧି ଦିଆ-
ଯିବ । ଏହି ଉପାଧିପ୍ରାପ୍ତ ବ୍ୟକ୍ତି କେବଳ ପଞ୍ଚାୟତରେ ସେକ୍ରେଟାରୀ
ହେବାର ନିୟମ ହେବା ଉଚିତ । ସେ ଜଣେ ସରକାରୀ କର୍ମଚାରୀ
ସ୍ୱରୂପ ଉପଯୁକ୍ତ ଦରମା ପାଇ ପଞ୍ଚାୟତର ସେକ୍ରେଟାରୀ ହେବେ ।
ପଞ୍ଚାୟତ ପ୍ରତି ପାଞ୍ଚବର୍ଷରେ ଭାଙ୍ଗିବ ଓ ଗଢ଼ାଯିବ, କିନ୍ତୁ ସେକ୍ରେଟାରୀ
ରହିଥିବେ । ପଞ୍ଚାୟତ ସେକ୍ରେଟାରୀ ଗ୍ରାମସେବକର କାର୍ଯ୍ୟ ମଧ୍ୟ
କରିବେ । ଏହା ହେଉଛି ମୋର ପ୍ରସ୍ତାବ । ଏହି ପ୍ରସ୍ତାବ ପାର୍ଲିଆ-
ମେଣ୍ଟ ସଭ୍ୟ ଥାଇ ମୁଁ ଦେଇଥିଲି । ସରକାର ମୋର ଏହି ପ୍ରସ୍ତାବକୁ
ଗ୍ରହଣ କରିଛନ୍ତି । ତାହା କାର୍ଯ୍ୟରେ ପରିଣତ ହେବ । କିନ୍ତୁ ଏ
ପର୍ଯ୍ୟନ୍ତ ସେପରି କିଛି କରାଯାଇନାହିଁ । ବର୍ତ୍ତମାନ କେବଳ ଦୁଇ-
ମାସିଆ ଟ୍ରେନିଂ ଦେବାର ବ୍ୟବସ୍ଥା ହୋଇଛି । ଏହା ମଧ୍ୟ କାର୍ଯ୍ୟରେ
କିପରି ପରିଣତ କରାଯାଉଛି କିଛି ବୁଝି ପଡ଼ୁନାହିଁ ।

ତାପରେ ପଞ୍ଚାୟତର ସରପଞ୍ଚ ଓ ନାଏବ ସରପଞ୍ଚ ଏବଂ
ବ୍ଲକ୍ ଉନ୍ନୟନ ସମିତି ଓ ଜିଲ୍ଲା ପରିଷଦର ସଭ୍ୟମାନଙ୍କୁ ଟ୍ରେନିଂ
ଦେବାର ବ୍ୟବସ୍ଥା କରାଯାଇଛି । ସେମାନଙ୍କୁ ପାଞ୍ଚଦିନ ଟ୍ରେନିଂ
ଦିଆଯିବ । ଥରକେ ପରୀକ୍ଷଣ କରି ବାଛି, ପ୍ରତି ଜିଲ୍ଲାରେ ଏହି
ଟ୍ରେନିଂ ଦେବାର ବ୍ୟବସ୍ଥା କରାଯାଇଛି । ତଦନୁସାରେ ସମଗ୍ର
ଭାରତରେ ଟ୍ରେନିଂ ଦିଆଯାଉଛି । ଏହାପରେ ପଞ୍ଚାୟତର ସମସ୍ତ ପଞ୍ଚ
ଯୁବକ ସଂଘ ଓ ମହିଳାମଣ୍ଡଳର କର୍ମକର୍ତ୍ତାମାନଙ୍କୁ ପ୍ରତି ବ୍ଲକ୍‌ରେ
ଟ୍ରେନିଂ କ୍ୟାମ୍ପ ଖୋଲି ଟ୍ରେନିଂ ଦେବାର ବ୍ୟବସ୍ଥା କରାଯାଇଛି ।
ତାହାଛଡ଼ା ଗ୍ରାମ-ସହାୟକମାନଙ୍କୁ ପ୍ରତି ପଞ୍ଚାୟତରୁ ଦୁଇଜଣ କରି
ବାଛି ଦୁଇ ତିନି ସପ୍ତାହ ପର୍ଯ୍ୟନ୍ତ କୃଷି ବିଦ୍ୟାଳୟ ତଥା କଲେଜରେ
କୃଷି ବିଷୟରେ ଟ୍ରେନିଂ ଦେବାର ବ୍ୟବସ୍ଥା କରାଯାଇଛି । ପ୍ରତି
ପଞ୍ଚାୟତରେ ଉନ୍ନତିକର ଯୋଜନାରେ ରଖାଯାଇଥିବା ପ୍ରତ୍ୟେକ

ବିଷୟକୁ ଉତ୍ତମରୂପେ କାର୍ଯ୍ୟ କରିବା ପାଇଁ ଯେଉଁ ଭିନ୍ନ ଭିନ୍ନ କମିଟି ଗଠନ ହୋଇଥିବ, ଉକ୍ତ କମିଟିରେ ପଞ୍ଚାୟତ ସଭ୍ୟଙ୍କ ସହିତ ଅନ୍ୟାନ୍ୟ ଗ୍ରାମବାସୀ ଥିବେ । ସେହି ଗ୍ରାମବାସୀମାନଙ୍କୁ ଟ୍ରେନିଙ୍ଗ୍ ଦେବାର କଳ୍ପନା କରାଯାଇ ବ୍ୟବସ୍ଥା ହୋଇଛି । ଏଥିରୁ ବୁଝାପଡ଼ୁଛି, ବ୍ଲକ୍‌ର କର୍ମଯୋଜନା ପ୍ରତି ସମସ୍ତଙ୍କ ହୃଦୟରେ କର୍ମ ପ୍ରେରଣାର ଭାବନା ଜାଗ୍ରତ କରାଇବା ଉଦ୍ଦେଶ୍ୟରେ କିପରି ବ୍ୟାପକ ବ୍ୟବସ୍ଥା ଗ୍ରହଣ କରାଯାଇଛି । ଏହା ଜାଣିଲା ପରେ, ଯେଉଁମାନେ ଦେଶର ଭାଗ୍ୟ ପରିବର୍ତ୍ତନ କରିବାକୁ କର୍ମଯୋଜନା କରୁଛନ୍ତି ସେମାନେ ଦେଶକୁ ବୁଝି ପାରୁନାହାନ୍ତି ବୋଲି କହିବା କିମ୍ବା ସେପରି ଭାବନାକୁ ମନରେ ସ୍ଥାନ ଦେବା ଉଚିତ ନୁହେଁ ।

## ସମ୍ମିଳନୀ ସାହାଯ୍ୟରେ ଶିକ୍ଷା

କେବଳ ଟ୍ରେନିଙ୍ଗ୍ ଦେବାରେ କାମ ସରିଯାଉନାହିଁ । ଦେଶର ଅଗଣିତ ନରନାରୀଙ୍କ ମନରେ ଜାଗରଣ ଆଣିବାକୁ ଅଧିକ ବ୍ୟାପକ ଆକାରରେ ଶିକ୍ଷା ଦେବାପାଇଁ ବ୍ୟବସ୍ଥା ଗ୍ରହଣ କରାଯାଇଅଛି । ଏହି ବ୍ୟବସ୍ଥାନୁଯାୟୀ ଗ୍ରାମ ସମ୍ମିଳନୀରୁ ଆରମ୍ଭକରି ପ୍ରଦେଶର ଶିଖର ସମ୍ମିଳନୀ ପର୍ଯ୍ୟନ୍ତ ଭାବର ଆଦାନ ପ୍ରଦାନ ଦ୍ୱାରା ଗଠନ କାମର ଗୁରୁତ୍ୱ ସମସ୍ତେ ଯେପରି ଉପଲବ୍ଧି କରି ପାରିବେ, ତାହା ହିଁ କଳ୍ପନା କରାଯାଇଛି । ଏହି ସମ୍ମିଳନୀଦ୍ୱାରା ବିଭିନ୍ନ ସ୍ତରରେ କାର୍ଯ୍ୟ କରୁଥିବା ବିଭିନ୍ନ ବ୍ୟକ୍ତିଙ୍କର ଜ୍ଞାନ ଓ ଅଭିଜ୍ଞତା ଜାଣିବାର ସୁବିଧା ମିଳିବ । ଗ୍ରାମସମ୍ମିଳନୀ ପ୍ରତି ପଞ୍ଚାୟତରେ ବସିବ । ପଞ୍ଚାୟତ ସଭ୍ୟଙ୍କ ସମ୍ମିଳନୀ ପ୍ରତି ବ୍ଲକ୍‌ରେ ବସିବ । ବ୍ଲକ୍‌ର ବିଭିନ୍ନ କର୍ମକର୍ତ୍ତା ଏହି ସମ୍ମିଳନୀରେ ସେମାନଙ୍କ ଅଭିଜ୍ଞତା ଜଣାଇ, କିପରି କାର୍ଯ୍ୟ ହେଉଛି ଅବା କିପରି କାର୍ଯ୍ୟ କଲେ ଅଧିକ ଫଳପ୍ରଦ ହୋଇପାରିବ

ସେ ବିଷୟରେ ନିଜନିଜର ମତାମତ ଦେଇ ପଞ୍ଚାୟତ ସଭ୍ୟମାନଙ୍କ ସହିତ ଆଲୋଚନା କରିବେ । ଏହା ସମ୍ମିଳନୀରେ ବସି ଆଲୋଚନା କରିବା ଦ୍ୱାରା ପ୍ରତ୍ୟେକ ପଞ୍ଚାୟତ ସଭ୍ୟ, ଗ୍ରାମସେବକ ଓ ସେବିକାମାନେ ବହୁତ କଥା ଜାଣିବା ଓ ଶିଖିବାର ସୁବିଧା ପାଇ ପାରିବେ । ଏହାଦ୍ୱାରା ସେମାନଙ୍କ ମନରେ କାର୍ଯ୍ୟପ୍ରତି ଆଗ୍ରହ ସୃଷ୍ଟି ହୋଇ ପାରିବ ବୋଲି ଆଶା କରାଯାଉଛି ।

ବ୍ଲକ୍ ପରେ ଜିଲ୍ଲାସମ୍ମିଳନୀ ବସିବ । ଜିଲ୍ଲାସମ୍ମିଳନୀରେ ବ୍ଲକ୍ ଅଫିସର, ଉନ୍ନୟନ ସମିତିର ସଭ୍ୟ, ଜିଲ୍ଲାପରିଷଦର ସଭ୍ୟ ଏବଂ ଜିଲ୍ଲାର ବିଧାନ ସଭା ଓ ପାର୍ଲିଆମେଣ୍ଟ ସଭ୍ୟଗଣ ଯୋଗଦେବେ । ଜିଲ୍ଲା ମାଜିଷ୍ଟ୍ରେଟ୍ ସବଡିଭିଜନ ଅଫିସର, ଅନ୍ୟାନ୍ୟ ଜିଲ୍ଲାର ଅଫିସର ଜିଲ୍ଲାସମ୍ମିଳନୀରେ ଯୋଗ ଦେଇ ସମସ୍ତ ଜିଲ୍ଲାର କାର୍ଯ୍ୟ-କ୍ରମକୁ ଆଲୋଚନା କରିବେ । ବିଭିନ୍ନ ବିଭାଗର କର୍ମଚାରୀ ଜିଲ୍ଲାରେ ଅଛନ୍ତି । ବ୍ଲକ୍ କାର୍ଯ୍ୟରେ ସାହାଯ୍ୟ ସହଯୋଗ କରିବା ସେମାନଙ୍କର କର୍ତ୍ତବ୍ୟ । ସୁତରାଂ ଏହି ଜିଲ୍ଲା ଅଫିସରମାନଙ୍କ କାର୍ଯ୍ୟର ଅଭିଜ୍ଞତା ଜିଲ୍ଲାସମ୍ମିଳନୀରେ ପ୍ରକାଶ ପାଇବ । ଜିଲ୍ଲାରୁ ବିଭିନ୍ନ ବ୍ଲକ୍‌ରୁ ଅଫିସର ଓ ଉନ୍ନୟନ ସମିତିର ସଭ୍ୟ ଯୋଗଦେଇ ଜିଲ୍ଲା ସମ୍ମିଳନୀରେ ଆଲୋଚନା କରିବା ଦ୍ୱାରା ଅନେକ ନୂଆ କଥା ସେମାନେ ଜାଣି ପାରିବେ ଏବଂ ନିଜ ନିଜ କାର୍ଯ୍ୟର ଗୁରୁତ୍ୱ ଉପଲବ୍ଧି କରି କାର୍ଯ୍ୟ କରିବେ ବୋଲି ଆଶା ।

ଜିଲ୍ଲାସମ୍ମିଳନୀ ପରେ ଜୋନାଲ୍ ସମ୍ମିଳନୀ ବସିବ । ଜୋନାଲ ସମ୍ମିଳନୀ ହେଉଛି ଡିଭିଜନ୍ ସମ୍ମିଳନୀ । ଏହି ଜୋନାଲ ସମ୍ମିଳନୀ ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ । ବ୍ଲକ୍‌ର କାର୍ଯ୍ୟ ପାଇଁ ସରକାରଙ୍କ ସବୁ ବିଭାଗରୁ ଟଙ୍କା ଖର୍ଚ୍ଚ ହେଉଛି । ବିଭାଗୀୟ କର୍ମଚାରୀମାନଙ୍କ ଦାୟିତ୍ୱ ହେଉଛି, ବ୍ଲକ୍‌ରେ ଯେଉଁ କାର୍ଯ୍ୟ ସବୁ କରାଯାଉଛି, ତଦ୍ଦ୍ୱାରା ପ୍ରତ୍ୟେକ

ବିଭାଗର କାର୍ଯ୍ୟ ଆଶାନୁରୂପ ହେଉଛି କି ନାହିଁ, ଏହି ଜୋନାଲ ସମ୍ମିଳନୀରେ ତହିଁର ଆଲୋଚନା ହେବ । ଏଥିରେ ବ୍ଲକ୍ ଉନ୍ନୟନ ସମିତି ଓ ଜିଲା ପରିଷଦର ସଭାପତି ଓ ଉପସଭାପତିମାନେ ଯୋଗ ଦେବେ । ବିଧାନ ସଭା ଓ ପାର୍ଲିଆମେଣ୍ଟ ସଭ୍ୟମାନେ ଯୋଗ ଦେବା କଥା । ଗ୍ରାମଗୋଷ୍ଠୀ ବିଭାଗର ଉଚ୍ଚ କର୍ମଚାରୀମାନେ ଜୋନାଲ୍ ସମ୍ମିଳନୀରେ ଯୋଗ ଦେଇ ବ୍ଲକ୍‌ର ପ୍ରତ୍ୟେକ କାର୍ଯ୍ୟର ସବିଶେଷ ଆଲୋଚନା କରିବେ । ବ୍ଲକ୍‌ର କାର୍ଯ୍ୟ ପାଇଁ ସ୍ଥିର କରା-ଯାଇଥିବା କର୍ମଯୋଜନା କିପରି କାର୍ଯ୍ୟକାରୀ କରାଯାଇଛି, କିପରି କରାଯାଇଥାନ୍ତା ଏବଂ କଣ କିପରି କରିବାକୁ ହେବ ଇତ୍ୟାଦି ବିଷୟରେ ବିଶଦ ଆଲୋଚନା କରାଯିବ । ଏହି ଜୋନାଲ୍ ସମ୍ମିଳନୀରେ ଦେଶର ଅଭାବ ଅନାଟନ ପ୍ରତି ଦୃଷ୍ଟି ଦେଇ ଯେଉଁ ନୂତନ କର୍ମଯୋଜନା ଗଢ଼ା ଯାଇଥିବ ତାହାର ଗୁରୁତ୍ୱ ହୃଦୟଙ୍ଗମ କରି କାର୍ଯ୍ୟ କରିବାକୁ ଡେଭଲପମେଣ୍ଟ କମିଶନର ସମସ୍ତଙ୍କୁ ବୁଝାଇ ଦେବେ ।

ଜୋନାଲ ସମ୍ମିଳନୀ ପରେ ଷ୍ଟେଟ୍ ସମ୍ମିଳନୀ ବସିବ । ଏହି ସମ୍ମିଳନୀରେ ଜିଲା ମାଜିଷ୍ଟ୍ରେଟ୍ ସବୁ, ବିଧାନ ସଭା ଓ ପାର୍ଲିଆମେଣ୍ଟର ସମସ୍ତ ସଭ୍ୟଗଣ ବିଭାଗୀୟ ସେକ୍ରେଟାରୀ ଓ ମନ୍ତ୍ରୀମାନେ ଯୋଗଦେବେ । ଏଥିରେ ସମସ୍ତ ଷ୍ଟେଟ୍ ଉନ୍ନତିମୂଳକ କର୍ମ-ଯୋଜନାର ଆଲୋଚନା କରାଯିବ । ଉନ୍ନତି ମୂଳକ କାର୍ଯ୍ୟ ଯାହା ହୋଇଛି ଏବଂ ଯାହା ହେବାର ଅଛି, ସବୁ ବିଷୟ ଆଲୋଚିତ ହୋଇ କର୍ମଯୋଜନା ସ୍ଥିର କରାଯିବ । ତଳୁ ଉପର ପର୍ଯ୍ୟନ୍ତ ଦେଶ ଗଠନ କାର୍ଯ୍ୟରେ ଅଂଶ ଗ୍ରହଣ କରୁଥିବା ଯେତେ ବ୍ୟକ୍ତି ଏବଂ ଯେତେସବୁ ସରକାରୀ କର୍ମଚାରୀ ଅଛନ୍ତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଏହିସବୁ ସମ୍ମିଳନୀର ପରିକଳ୍ପନା କରାଯାଇଛି । ଦେଶକୁ

ନୂତନ ରୂପରେଖ ଦେବାକୁ ଚଳାଯାଇଥିବା କର୍ମଯୋଜନା ଯୁକ୍ତ ସମସ୍ତଙ୍କ ହୃଦୟରେ କର୍ମପ୍ରେରଣାର ଭାବନା ଉଦ୍ରେକ କରାଇବା ପାଇଁ ଆଉ ଅଧିକ ବ୍ୟବସ୍ଥା କଣ କରାଯାଇ ପାରିବ ? ବିଭିନ୍ନ ପ୍ରକାର ଗଠନମୂଳକ କାମ ଦେଶରେ ଆରମ୍ଭ କରାଯାଇଛି ଓ କରାଯାଉଛି । ଭବିଷ୍ୟତରେ ମଧ୍ୟ କରାଯିବ । ଏହାର ଗତି କଦାପି ରୋଧ ହେବ ନାହିଁ । ଦେଶବାସୀଙ୍କ ବସ୍ତୁର ବୁଦ୍ଧି ଉପରେ ଏହି ଗତିର ବେଗ ନିର୍ଭର କରୁଛି ।

## ଭ୍ରମଣରୁ ଜ୍ଞାନ ଲାଭ

ଗ୍ରାମର ସମୂହ ଉନ୍ନତିମୂଳକ କର୍ମଯୋଜନାର ଲକ୍ଷ୍ୟକୁ ସ୍ୱତଃସ୍ଫୂର୍ତ୍ତ ହୃଦବୃଙ୍ଗମ କରି କାର୍ଯ୍ୟ କରିବାକୁ ମନରେ ଉତ୍ସାହ ଜାତ କରାଇବା ପାଇଁ ସମ୍ମିଳନୀର ପରିକଳ୍ପନା । ଗ୍ରାମର କପରି କାମ କରିବାକୁ ହେବ ସେଥିପାଇଁ ମଧ୍ୟ ଟ୍ରେନିଙ୍ଗ୍ ଦେବାରେ ବ୍ୟବସ୍ଥା କରାଯାଉଛି । ଗ୍ରାମର ଯାବତୀୟ ଉନ୍ନତିକର କାମ କରିବାକୁ ଗ୍ରାମ ପଞ୍ଚାୟତ ଉପରେ ନିର୍ଭର କରିବାକୁ ପଡ଼ୁଛି । ସେମାନଙ୍କ ଦାୟିତ୍ୱ ଜ୍ଞାନ ବୃଦ୍ଧି କରିବା ଉଦ୍ଦେଶ୍ୟରେ ପଞ୍ଚାୟତ ହାତକୁ ଅଧିକ କ୍ଷମତା ଦେଇ ପଞ୍ଚାୟତ-ରାଜ ସ୍ଥାପନ କରାଯିବ । ସେମାନଙ୍କୁ ଉପଯୁକ୍ତ ଟ୍ରେନିଙ୍ଗ୍ ଦେବାର ମଧ୍ୟ ବ୍ୟବସ୍ଥା ଗ୍ରହଣ କରାଯାଇଛି । ପଞ୍ଚାୟତର ସରପଞ୍ଚ, ନାଏବ ସରପଞ୍ଚ ଓ ଗ୍ରାମ-ସାହାଯ୍ୟକ ଏହି ତିନଶ୍ରେଣୀର ବ୍ୟକ୍ତିମାନଙ୍କ ବସ୍ତୁର ବୁଦ୍ଧିରୁ ସଂକୀର୍ଣ୍ଣ ଚିନ୍ତା ଦୂର ନହେଲେ କୌଣସି କାର୍ଯ୍ୟ ଆଶାନୁରୂପ ଫଳପ୍ରଦ ହେବ ନାହିଁ । ଏହି ସଂକୀର୍ଣ୍ଣ ମନୋବୃତ୍ତି ପରିବର୍ତ୍ତିତ ହେବାକୁ ଉପାୟ ଅବଲମ୍ବନ କରାଯାଇଛି । ଏହି ଶ୍ରେଣୀର କର୍ମୀ ସମସ୍ତେ ପଲ୍ଲୀ-ଗ୍ରାମରେ ବାସକରି ଦୁଃଖ ବେଦନା ଭିତରେ ପଡ଼ି ରହିଛନ୍ତି । ସେମାନେ ଦେଶର ବିଭିନ୍ନ ସ୍ଥାନ ଭ୍ରମଣ

କରିବାର ସୁବିଧା ପାଉନାହାନ୍ତି । ଦେଶରେ ନାନା ପ୍ରକାର ଉନ୍ନତି-କର ଯୋଜନା କାର୍ଯ୍ୟ କରାଯାଉଛି । ସେସବୁ ବୁଲି ଦେଖିଲେ ସେମାନଙ୍କ ମନରେ ପରିବର୍ତ୍ତନ ଆସିବା ଅସମ୍ଭବ ନୁହେଁ । ତେଣୁ ଭ୍ରମଣଦ୍ୱାରା ସେମାନଙ୍କୁ ତଥା ଶିକ୍ଷା ଦାନର ବ୍ୟବସ୍ଥା କରାଯାଇଛି । ସରପଞ୍ଚ, ନାଏବପଞ୍ଚ ଓ ଗ୍ରାମ-ସହାୟକମାନଙ୍କ ପାଇଁ କେବଳ ଏହି ଭ୍ରମଣ-ବ୍ୟବସ୍ଥା ।

ପ୍ରଥମେ ବ୍ଳକ୍ ଅନ୍ତର୍ଗତ ସବୁ ପଞ୍ଚାୟତରେ ବୁଲି କାର୍ଯ୍ୟ ସବୁ ଦେଖିବା ପାଇଁ ବ୍ଳକ୍‌ର ସବୁ ସରପଞ୍ଚ, ନାଏବସରପଞ୍ଚ ଓ ଗ୍ରାମ-ସହାୟକମାନଙ୍କୁ ଗୁଡ଼ିଏ ଦଳରେ ବିଭକ୍ତ କରି ସେମାନଙ୍କୁ ଗୋଟିକ ପରେ ଆଉ ଗୋଟିଏ ଦଳକୁ ସଙ୍ଗରେ ଧରି ବ୍ଳକ୍ କର୍ମ-ଚାରୀମାନଙ୍କ ମଧ୍ୟରୁ ଜଣେ ବ୍ଳକ୍‌ର ବିଭିନ୍ନ ପଞ୍ଚାୟତରେ ବୁଲି କାମ ସବୁ ଦେଖିବେ । ରାତିରେ ଯେଉଁ ଗ୍ରାମରେ ରହୁଥିବେ ସେହି-ଗ୍ରାମରେ ସଭା କରି ଗ୍ରାମବାସୀମାନଙ୍କ ସହିତ, ଗ୍ରାମର ସୁଖ ଦୁଃଖ ଆଲୋଚନା କରିବେ । ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ କିପରି ହେଉଛି ଗ୍ରାମବାସୀମାନଙ୍କ ମନ ଓ କଥାରୁ ସବୁ ବୁଝାପଡ଼ିବ । ପ୍ରତ୍ୟେକ ନିଜ ନିଜ ଗ୍ରାମରେ ହେଉଥିବା କାମର ଅଭିଜ୍ଞତା ବର୍ଣ୍ଣନା କରିବେ । ଏପରି ଭ୍ରମଣ କରିବା ଦ୍ୱାରା ଜ୍ଞାନଲାଭ ଏବଂ ପ୍ରଚାର କାର୍ଯ୍ୟ ମଧ୍ୟ ଉତ୍ତମରୂପେ ହୋଇପାରିବ ।

ବ୍ଳକ୍ ଭ୍ରମଣ କାର୍ଯ୍ୟ ଶେଷକରି ଜିଲାରେ ଭ୍ରମଣ କରିବାକୁ ପଡ଼ିବ । ଜିଲାରେ ଯେତେ ବ୍ଳକ୍ ଥିବ, ସେସବୁ ବ୍ଳକ୍ ଉନ୍ନୟନ ସମିତିର ସମସ୍ତ ସଭ୍ୟମାନଙ୍କୁ ଗୁଡ଼ିଏ ଦଳ କରି ଜିଲା ଭ୍ରମଣ କାର୍ଯ୍ୟ କରାଯିବ । ଜିଲାର ଭ୍ରମଣ ସମାପ୍ତ ହେଲେ ସମସ୍ତ ଷ୍ଟେଟ୍ ଭ୍ରମଣ କାମ ଆରମ୍ଭ କରାଯିବ । ଷ୍ଟେଟ୍‌ରେ ଭ୍ରମଣ ପାଇଁ ପରୀକ୍ଷଣ କରି ଗୁଡ଼ିଏ ଦଳ କରାଯିବେ । ଏହି ଷ୍ଟେଟ୍ ଭ୍ରମଣ

ପାଇଁ ଉନ୍ନୟନ ସମିତି ଓ ଜିଲ୍ଲା ପରିଷଦର ସଭାପତି ଓ ଉପସଭାପତି, ଆଉ କେତେଜଣ ବଚ୍ଛା ଗ୍ରାମ-ସହାୟକ ରହିବେ । ଷ୍ଟେଟ୍‌ର ଯେଉଁ ସ୍ଥାନରେ ବଡ଼ ବଡ଼ କାମ ହେଉଛି ସେଠି କାମ ସବୁ ଦେଖିବେ । ଗ୍ରାମଗୋଷ୍ଠୀ ଭିତରୁ କର୍ମୀମାନେ ଏମାନଙ୍କ ସଙ୍ଗରେ ଯାଇଁ ସବୁଠାରେ କାମସବୁର ବିଷଦ ବିବରଣୀ ଶୁଣାଇବେ । ସ୍ୱଦେଶରୁ ଜନ୍ତୁସ୍ଥ ଅଭାବ ସବୁ ଦୂର କରି ନ ପାରିଲେ ଦେଶର ଜନସାଧାରଣଙ୍କ ଅଭାବ ଦୂର ହୋଇ ପାରିବ ନାହିଁ । ଏହି କଥା ସେମାନେ ବୁଝି ଦେଶ ଗଢ଼ିବାକୁ କିପରି କାମସବୁ କରା-ଯାଉଛି, ତାହା ଜାଣି ପାରିବେ । ଷ୍ଟେଟ୍ ଭ୍ରମଣ ଶେଷ କଲା ପରେ ଭାରତ ଭ୍ରମଣ କରିବା ପାଇଁ ଲୋକ ବଚ୍ଛାଯିବେ । ଭାରତ ଭ୍ରମଣ ପାଇଁ ପଚିଶଜଣ କରି ଦୁଇଟି ଦଳ ବଚ୍ଛାଯିବେ । ଭାରତରେ ବହୁତ ବଡ଼ ବଡ଼ କାମ କରାଯାଉଛି ଏବଂ ଏବେ ମଧ୍ୟ କାମ ଚାଲିଛି । ସମସ୍ତ ଭାରତ ଭ୍ରମଣ କରି କାମସବୁ ଦେଖି ଆସିବା ବ୍ୟକ୍ତିର ବିଚାର ବୁଦ୍ଧି ନିଶ୍ଚୟ ବଦଳିବ ବୋଲି ଆଶା କରିବା ବୃଥା ହୋଇ ନ ପାରେ । ଭାରତ ଭ୍ରମଣରେ ଭ୍ରମଣଦ୍ୱାରା ଶିକ୍ଷାଲାଭର କର୍ମଯୋଜନା ସରିଯାଉ ନାହିଁ । ଏହାପରେ ବିଦେଶ ଭ୍ରମଣରେ ଲୋକ ପଠାଇବାର ବ୍ୟବସ୍ଥା ଅଛି । ପ୍ରତିବର୍ଷ ଗୋଟିଏ ଦଳ ବିଦେଶ ଭ୍ରମଣକୁ ବଚ୍ଛାଯାଉଅଛନ୍ତି । ବିଦେଶରେ ଭ୍ରମଣକରିବା ପାଇଁ ପ୍ରତି ଷ୍ଟେଟ୍‌ରୁ ଦୁଇଜଣ ବଚ୍ଛାଯାଉଛନ୍ତି । ବିଦେଶ ଦେଖି ଆସିଲେ ସେହି ସବୁ ଦେଶରେ ସାଧାରଣ ପ୍ରଜା ଦେଶକୁ ଆପଣାର ଭାବି କିପରି ପରିଶ୍ରମ କରୁ ଅଛନ୍ତି ତାହାସବୁ ଦେଖି ସେହିପରି ଦେଶକୁ ଆପଣାର କରିବାକୁ ମନରେ ଉଦ୍‌ବେଗ ଜାତ ହେବ ଏବଂ ଦେଶ ପାଇଁ କଠିନ ପରିଶ୍ରମ କରିବାକୁ କେହି କୁଣ୍ଠିତ ହେବେ ନାହିଁ । ଭାରତର ପ୍ରତିପଲ୍ଲିରେ ନୂତନ ଜୀବନ ସଞ୍ଚାର କରିବା ପାଇଁ ଏପରି

ବ୍ୟାପକ ବ୍ୟବସ୍ଥା ଗ୍ରହଣ କରାଯାଇଅଛି । ଏହାଦ୍ୱାରା ଦେଶର ଅବସ୍ଥା ନିଶ୍ଚୟ ବଦଳିବ । ବହୁ ବର୍ଷରେ ପରାଧୀନତା ଦୋଷରୁ ଦେଶବାସୀଙ୍କ ମନରେ କଳଙ୍କ ଲାଗିଯାଇଛି । ଏହି କଳଙ୍କ ଛଡ଼େଇବାକୁ ଅଦମ୍ୟ ପରିଶ୍ରମ କରିବା ପାଇଁ ଯୋଜନା ସବୁ ପ୍ରସ୍ତୁତ କରାଯାଇଅଛି । ଯୋଜନାକୁ ବୁଝି ବାସ୍ତବ କାମ କରିବାକୁ ଦେଶବାସୀଙ୍କ ହୃଦୟରେ ଆଗ୍ରହ ଦେଖା ଦେଲେ ଅଳ୍ପ ସମୟ ଭିତରେ ଭାରତ ନିଜ ଗୋଡ଼ରେ ଠିଆ ହେବାକୁ ବଳ ପାଇ ପାରିବ, ଏଥିରେ ସନ୍ଦେହ ନାହିଁ ।

## ଦେଶର ଅହ୍ୱାନ

ବ୍ଲକ୍ କର୍ମଯୋଜନାର ଏକମାତ୍ର ଲକ୍ଷ୍ୟ ଦେଶବାସୀଙ୍କୁ ଗୋଟିଏ ନୂତନ ଧାରାରେ ଦୀକ୍ଷିତ କରିବା । ଏହି ନୂତନ ଧାରା ହେଉଛି ଗ୍ରାମରେ ବାସ କରୁଥିବା ପ୍ରତ୍ୟେକ ନରନାରୀଙ୍କ ହୃଦୟରେ ଦେଶପ୍ରତି ପ୍ରଗାଢ଼ ଅନୁରାଗ ଜାଗରି ଉଠିବ ଏବଂ ଗ୍ରାମର ସମୃଦ୍ଧ ଉନ୍ନତିମୂଳକ କାର୍ଯ୍ୟକୁ ଜୀବନର ପରମ କର୍ତ୍ତବ୍ୟରୂପେ ଗ୍ରହଣ କରି କାର୍ଯ୍ୟ କରିବାକୁ ସବୁବେଳେ ମନପ୍ରାଣ ଉଦ୍‌ବୁଦ୍ଧ ହୋଇ ଉଠିବ । ଗ୍ରାମରେ ବାସକରୁଥିବା ଭାରତର କୋଟି କୋଟି ନରନାରୀଙ୍କ ମନ ଓ ହୃଦୟରେ ଭାରତକୁ ସମୃଦ୍ଧଶାଳୀ କରି ଗଢ଼ିବାକୁ ଉଦ୍‌ବେଗ ପ୍ରକାଶ ପାଇବ । ସେଦିନ ଭାରତର ରୂପ ବଦଳିଯିବ । "ଭାରତ ମୁଷ୍ଟିମେୟ ସହରରେ ନାହିଁ, ଭାରତର ପ୍ରକୃତ ରୂପ ଗ୍ରାମରେ ଦେଖିବାକୁ ମିଳିବ", ମହାତ୍ମା ଗାନ୍ଧୀଙ୍କର ଏହି ବାଣୀ ନିରଟ ସତ୍ୟ କଥା ବୋଲି ପ୍ରମାଣିତ ହେବ । ପୃଥିବୀରେ ଭାରତ ଉଚ୍ଚ ଆସନ ଲାଭ କରିବ । ଗ୍ରାମ ଓ ଦେଶର କଲ୍ୟାଣ ପାଇଁ କାମ କରିବାରେ ମନୁଷ୍ୟ ଜୀବନରେ ପରମ ଆନନ୍ଦ

ଉପଲବ୍ଧି କରିପାରେ । ଅପରର ସୁଖ ପାଇଁ ନିଜର ଦୁଃଖ ବରଣ କରିବା ମନୁଷ୍ୟର ଧର୍ମ ଏବଂ ପରସ୍ପର ଭାବନାର ଅନ୍ତ ହେଉଛି ମନୁଷ୍ୟର ମୁକ୍ତି । ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି —

"ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜ୍ଜୁନ
ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ ।"

ହେ ଅର୍ଜ୍ଜୁନ, ସମସ୍ତଙ୍କ ସୁଖ ଦୁଃଖରେ ଯେ ବ୍ୟକ୍ତି ନିଜର ସୁଖ ଦୁଃଖ ଅନୁଭବ କରିପାରିବାର ଶକ୍ତି ଲଭିଛିରେ ସେ ବ୍ୟକ୍ତି ଉତ୍କୃଷ୍ଟ ଯୋଗୀ ଅଟେ ।

ଏଠାରେ ଯୋଗୀ ହେଉଛି ସାଧକ ପୁରୁଷ । ଅର୍ଥାତ୍ ଯେଉଁ ବ୍ୟକ୍ତି ନିଜର ବ୍ୟକ୍ତିଗତ ସୁଖ ଦୁଃଖ ଚିନ୍ତାରେ ନିମଗ୍ନ ନ ରହି, ସମଗ୍ର ମାନବ ଜାତିର ସୁଖ ଦୁଃଖକୁ ନିଜର କରିପାରେ ଏବଂ ସମସ୍ତଙ୍କର ଦୁଃଖ ଦୂର କରିବା ପାଇଁ କର୍ମ କରିବାରେ ଜୀବନରେ ପରମ ଆନନ୍ଦ ଅନୁଭବ କରିପାରେ, ସେହି ବ୍ୟକ୍ତି ପ୍ରକୃତରେ ସୁଖୀ । ସେହି ବ୍ୟକ୍ତି କେବଳ ମୁକ୍ତିର ଅଧିକାରୀ । ସୁତରାଂ ନିଜର ସଙ୍କୀର୍ଣ୍ଣ ସ୍ୱାର୍ଥଜଡ଼ିତ କର୍ମ କରିବାରେ ଅନ୍ଧ ବନ୍ଧନ ପାଇଁ ଯେଉଁ ଦିନ ଭାରତର ପଲ୍ଲିବାସୀ ନିଜ ଗ୍ରାମ ତଥା ଦେଶର ସମୃଦ୍ଧ ଉନ୍ନତିକର କର୍ମ କରିବାରେ ଜୀବନର ପରମ ଆନନ୍ଦ ଅନୁଭବ କରିବ, ସେଦିନ ଭାରତରେ ମହାତ୍ମାଗାନ୍ଧୀଙ୍କ କଳ୍ପିତ ରାମରାଜ୍ୟ ପ୍ରତିଷ୍ଠିତ ହେବ, ଏହି ରାମରାଜ୍ୟ ପ୍ରତିଷ୍ଠା କରିବାକୁ ଆହ୍ୱାନ କରି ମହାପୁରୁଷ ମହାତ୍ମା ଗାନ୍ଧୀ ଜୀବନକୁ ବଳିଦାନ କରି ଯାଇଛନ୍ତି । ଭାରତମାତା ଆହ୍ୱାନ କରୁଛି, ତାର ଲକ୍ଷ ଲକ୍ଷ କୋଟି ସନ୍ତାନଙ୍କ ଦୁଃଖ ଦୂର କରିବା ପାଇଁ । ଏହି ଆହ୍ୱାନ ହେଉଛି ସ୍ୱାଧୀନ ଭାରତର ଆହ୍ୱାନ ।

# ମାନବ ସମାଜର ମୁକ୍ତିର ଆଧାର ଭାରତ

ମାନବ ସମାଜ ବର୍ତ୍ତମାନ ଗୋଟିଏ ସନ୍ଧିସ୍ଥଳରେ ପଡ଼ିଅଛି । ବର୍ତ୍ତମାନ ପୃଥିବୀର ପରିସ୍ଥିତି ଅତି ସଙ୍କଟପୂର୍ଣ୍ଣ । ଏହି ସଙ୍କଟପୂର୍ଣ୍ଣ ଅବସ୍ଥାରୁ ମାନବ ଜାତିକୁ ଉଦ୍ଧାର କରିବା ପାଇଁ ପଥ ଦେଖାଇବା ପୃଥିବୀର ଏକମାତ୍ର ଚିନ୍ତା । ସୃଷ୍ଟି ଆରମ୍ଭରୁ ମନୁଷ୍ୟ ସୁଖ ଅନ୍ୱେଷଣ କରୁଛି । ମନୁଷ୍ୟ ସୁଖରେ କପରି ବସବାସ କରିବ ସେଥିପାଇଁ ଦେଶ ଓ ସମାଜକୁ ପରିଚାଳନା କରିବା ଆବଶ୍ୟକ ପଡ଼ିବାରୁ ରାଜପଦ ସୃଷ୍ଟି ହେଲା । ରାଜପଦ ପ୍ରଜାଙ୍କ ପାଇଁ ପ୍ରତିକୂଳ ବିବେଚିତ ହେବାରୁ ରାଜ ଅଧିକାର ଲୋପ କରି ପ୍ରଜାଙ୍କ ହାତରେ ଦେଶ ନିୟନ୍ତ୍ରଣ କରିବାର କ୍ଷମତା ଦିଆଗଲା । ଏଥିରୁ ସମାଜବାଦ ଏବଂ ତହିଁରୁ ପୁଣି ସାମ୍ୟବାଦ ଉତ୍ପତ୍ତି ହୋଇ ପୃଥିବୀରେ କେବଳ ବାଦବିବାଦ ବୃଦ୍ଧି ପାଇଛି—କିନ୍ତୁ ମନୁଷ୍ୟ ସୁଖ ଶାନ୍ତିରେ ବାସ କରିବାର ନିର୍ଭୁଲ ବାଟ କଣ, ସମସ୍ତଙ୍କ ମନ ମାନିଲା ଭଳି କଥା କେହି କହିପାରୁ ନାହାଁନ୍ତି । ଏପରି ପରିସ୍ଥିତିରେ ଭାରତରେ ଏକ ନୂତନ ଆଦର୍ଶକୁ ପରୀକ୍ଷା କରାଯାଉଛି । ପ୍ରଜାତନ୍ତ୍ର ଶାସନ ସୂତ୍ରରେ ସାମ୍ୟବାଦ ପ୍ରତିଷ୍ଠା କରିବା ଭାରତର ବର୍ତ୍ତମାନ ଆଦର୍ଶ । ପୃଥିବୀର ଜନସାଧାରଣ ବର୍ତ୍ତମାନ ସଙ୍କଟପୂର୍ଣ୍ଣ ଅବସ୍ଥାରେ କୌଣସି ଆଶା ନ ଦେଖି ଭାରତ ଆଡ଼କୁ ଦୃଷ୍ଟିପାତ କରିଛନ୍ତି । ଭାରତ ଯେଉଁ ମାର୍ଗରେ ତାହାର ମୁକ୍ତି ସାଧନ କରିଛି, ଯେପରି ଶାନ୍ତିପୂର୍ଣ୍ଣ ଭାବରେ ଶତ ଶତ ରାଜପଦର ଲୋପ ସାଧନ କରି ବିଶାଳ ଭାରତର ଅବୟବ ଗଠନ କରିଛି ଏବଂ ତାର ସମସ୍ତ ପ୍ରକାର ବିବାଦ ବିସମ୍ବାଦ ସମାଧାନ କରିବାକୁ ସଦ ଅବସ୍ଥାନ ଉପରେ ଅଟଳ ବିଶ୍ୱାସ ରଖି ପୃଥିବୀରେ ତାର ପୂର୍ବାଜିତ ପଞ୍ଚଶୀଳ ନୀତି ବ୍ୟାପ୍ତ କରୁଛି, ତାହାହିଁ ମାନବ ସମାଜର ମୁକ୍ତି

ବାଣୀ । ଏହି ବାଣୀ ଭାରତ ପୃଥିବୀକୁ ଶୁଣାଇବାକୁ ବ୍ୟଗ୍ର ହୋଇ ଉଠିଛି । କିନ୍ତୁ ଭାରତରେ ମହାତ୍ମାଗାନ୍ଧୀଙ୍କ କଳ୍ପିତ ରାମରାଜ୍ୟ ପ୍ରତିଷ୍ଠିତ ନ ହେଲେ ଭାରତ ପଞ୍ଚଶୀଳ ବାର୍ତ୍ତା ପୃଥିବୀକୁ ଶୁଣାଇ ପାରିବନାହିଁ । ତେଣୁ ଭାରତର ଆହ୍ୱାନ ହେଉଛି, ପୃଥିବୀର ମୁକ୍ତି ଆହ୍ୱାନ । ଭାରତବାସୀ ସେହି ଆହ୍ୱାନର ବାଣୀ ଶୁଣିପାରି ଜାଗ୍ରତ ହେଲେ ଭାରତ ପୃଥିବୀକୁ ଶୁଣାଇ ପାରିବ—

"ସର୍ବେ ଭବନ୍ତୁ ସୁଖିନଃ  
ସର୍ବେ ସନ୍ତୁ ନିରାମୟାଃ  
ସର୍ବେ ଭଦ୍ରାଣି ପଶ୍ୟନ୍ତୁ  
ମା କଶ୍ଚିତ୍ ଦୁଃଖଭାଗ ଭବେତ୍ ।



ମୁଦ୍ରାକର—ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ, କଟକ-୨